# କଥାପଦେ

ଏଥର ଭ୍ରତ ନାଁଅଣ୍ଟିଅବେଳେ ଦିନେ ସନ୍ଧ୍ୟାରେ ବସାକୁ ଫେରୁଥିଲି, ମନହେଲା ଲେଖିବି "ଭ୍ରତ"। ସେଇଟା ଭାଦ୍ରବ ମାସ। ଲେଖା ଆରମ୍ଭ କରିଦେଲି। କେବେ କାମ ସାରିବା ଅଭ୍ୟାସ ମୋର ନାହିଁ। ପିଲାବେଳେ ବିନ୍ଧୁଙ୍କ ମୁହଁର "ଅଳସୁଆ" ପଦଟା କେବଳ ମୋହେତ ଚିହ୍ନାଏଁ। ବାଙ୍କ କାଟେଁ, ବାଟେଁ, ଷ୍କେ ଗୃଟେଁ, ପରଟେଁ—ମୁଁ। ତା ଭିତରେ ଗଳ୍ପ ଅଇଲା, ସାଙ୍ଗ ସାଥି, ଇଶତଣ୍ଣ ନାନା ଗହଳି ନେଇ ଚାଲିବାକୁ ହବ ମୋତେ। ଅଧ୍ୟବଟା ତ ପୂର୍ଣ୍ଣ ମୋର ରକ୍ତ ସାଙ୍ଗରେ ମିଶା। ଏଇସବୁକୁ ବିଗୁର ମୁଁ ଅଳସୁଆ କି ନୁହେଁ ଭାବିଲେ ଭଲ ହୁଅନ୍ତା—ଗ୍ଲଡ଼। ମୁଁ ସେଥିକି ମନ ଦୁଃଖ ନ କରି ଅନୁଭବ ହସେଁ। ଭ୍ରତ ଲେଖା ଗୁଲିଥାଏ—କଟା ଗୁଲିଥାଏ। କିଏ କେମିତ "ଭ୍ରତ" ନାଆଁଟା ଶୁଣି "ଟେଷ୍ଟୀ"ର ନକଲ ବୋଲି କହି କହୁ ପକେଇଲେ! ସେତେବେଳକୁ ମୋଟେ ଲେଖା ୪।୬ ଫାଳ ହେଇନାହିଁ। ଆମ ଏଠି ଥୋଡେ ଅଗତକୁହା ଏମିତ ଅଛନ୍ତି, ନାଣ୍ଡି ନ ଦେଖୁଣୁ ଲଙ୍ଗଳା ହୁଅନ୍ତି। ଟେଷ୍ଟୀ ଆଜ ଭ୍ରତ—ଲେଖା ଆକାଶ ପାତାଳ ପ୍ରଭେଦ। ତଥାପି ଗୋଟେ ରକମର ମୁହଁ ତାଙ୍କର—ସେ କହିବେ। କାନ ଅଛୁ ଆମେ ଶୁଣିବା।

କାର୍ତ୍ତିକବେଳକୁ ଓଡ଼ିଶା ଥିଏଟର୍ସ ଦଳ ନେଇ ପୁରୀ ଗଲି, ଗୋଟେ "ତକଗିରେ"। ସେଠି ମଞ୍ଚରେ ମଞ୍ଚରେ ଭ୍ରତ ଲେଖା ହଉଥାଏ। ଅଠଦିନ, ଦଶଦିନ, ପନ୍ଦର ଦିନରେ ଗୋଟେ ଦୁଷ୍ଟ ଲେଖା ହେଇ ହେଇ ଜଟେକ ବାହୁଡ଼ିବା ବେଳକୁ ଅଧାଅଧ

ବହୁ ସବଶ । ବଡ ମହାନ୍ତ ( ଶ୍ରୀ ବଶଶାନନ୍ଦ ମହାନ୍ତ ) ଧରେ ଟିଭଲ କଲେ । ମୋତେ ଗମ୍ଭୁଟି ଦବା ଅଭ୍ୟାସ ତାଙ୍କର ଟିକି ଅଛି । ବହୁତ ତାଙ୍କ ଗୁରୁଙ୍କ ଖାଇ ବେଗେ ବେଗେ ସାର ଅ... ଧୁ ଶିକ୍ଷା ଆରମ୍ଭ କଲି । ସଙ୍ଗେ ସଙ୍ଗେ ବଡ ମହାନ୍ତ ମୋତେ ...ବେଦ ଅଧେ କହୁଥାନ୍ତି । ମୁ ବି ତାଙ୍କ ପରସ୍ତ୍ରେ ଲେଖାଏଁ ଝାଡ଼ୁଥାନ୍ତି ନାହିଁ । ଏଇମିତ ହେଲ ଅଭିନୟ ଆରମ୍ଭ ହେଲା ।

ଭଉଣୀ ସରଳା ଦେଈ ( ମୁଁ ଡାକେ ଦୁଃଖୀ ) ମୋ ଅନୁରୋଧରେ "ଭ୍ରାନ୍ତ" ଅଭିନୟର ଶୁଭ ଦେଲେ । ଆଗେ ଆମ ଏଠି ଗୋଟେ ନାଟକ ଉଦଘାଟନ ଗ୍ଭଲେ ବଡ଼ କଥା ବୋଲି କହୁଥିଲେ । ଭ୍ରାନ୍ତ ଗ୍ଭଲିଲା ୧୦୮ ରାତି । ସେତେବେଳକୁ ଡିସେମ୍ବର ମାସ ୧୯୪୪ ମସିହା । ମାଟି ଚକଟି ପ୍ରତିମା ଗଢ଼ିଥିଲି ଯାହାଙ୍କୁ ସେଇମାନେ ହେଲେ ଭ୍ରାନ୍ତର ପରଶୁଣ୍ଡିଆଁ । ବଡ଼ ଦାନ୍ତଗଞ୍ଜ ଭିତରେ ଭାତ ଫୁଟିଚି—ପରଖା ହୋଇଚି । ଲୋକ ଦେଖାକୁ ମୁଁ ବଡ଼ ମଉଜରେ ଥାଏଁ । ମାଟି ଚକଟା କୁମ୍ଭାରର ଯୋଉ ସୁଖ ଅନୁମାନ କରନ୍ତୁ—ସେ କଥାଟା ଏବେ ମୋ ପିଲାଏ ଟିକିଏ ଟିକିଏ ଅଙ୍ଗେ ନିଭେଇଲେଣି । ମୁହଁରେ ନ କହନ୍ତୁ ପଛେ ମନେ ମନେ ନିଚେ ଜାଣୁଥିବେ । ଘରଭାତ ପରକୁ ବାଢ଼ି ଏ ବୁଢାଟାକୁ ଆଡ଼େଇ ଦେଇ ସେମାନେ ଗଲେ ତୋଳିବାକୁ ଦେହଲି ! ବାହାରେ ନାନା କଥା ଶୁଣାଗଲା । ମିଛ ସତର ସାକ୍ଷୀ ଉପରେ ଅନନ୍ତ । ଭ୍ରାନ୍ତ ଦେଶରେ ଚହଲ ଅଣିଲା । ମୋ ଜାତିପୁଏ ମୋ...ତ ଠାଣୁଅଁ ସଂବର୍ଦ୍ଧନା ମଧ ଦେଲେ । ତାହାର ମନ କୁଣ୍ଠେ ମୋଟେ ହେଲା—ତାହା ଛଡ଼ ସହିଲା ନାହିଁ । ବାଛ ମୋ ବାମ ମୁଁ କଲି, ଉତ୍ତ—ଛୁଟିଥିବ ମଲାପାଏଁ । ଆମ ଏଠି ତ ଧଳାକୁ କଳା କହିବାକୁ ବେଶି ସମୟ

ଲାଗେ ନାହିଁ—ଦୁଃଖ ଲାହିଁକି ? ମୋ ପିଠିରେ ହାତ ମାରିଛନ୍ତି ଏକନେକ ବନ୍ଧୁ । ଯାଜପୁରଅ ଭାଇ, କେନ୍ଦ୍ରାପଡ଼ାଅ ଭାଇ, କଟକ ମଣ୍ଡିତୁର ସଙ୍ଗ ମୋତେ ଭଲ ଲଗେ ଗଣିଛନ୍ତି—ମୁଁ ଧନ୍ୟ—ତାଙ୍କ ପାଖେ କୃତଜ୍ଞ । ବିଶେଷ ଭାବରେ ଶ୍ରୀମତୀ ଲତିକା ଦେଈ, [illegible] ଦେଈ ଓ ଶ୍ରୀଯୁକ୍ତ ବୀରବାବୁ ( ବର୍ତ୍ତମାନ ଇଡ଼ିସ୍‌ ଗଡ଼ ) ମୋତେ ସ୍ନେହ ଦେଇ, ଉତ୍ସାହ ଦେଇ ଆଶୀର୍ବାଦ କରିଛନ୍ତି । ମୁଁ ତାଙ୍କମାନଙ୍କ ପାଖେ ଚିରଋଣୀ । କାଗଜ ପତ୍ରବେଳ ନ ହୋଇଥିଲେ ଭଲ କାରଣ ଦାସେ ( ଶ୍ରୀ ନାରାୟଣଚନ୍ଦ୍ର ଦାସ—ପ୍ରକାଶକ ) ଅନେକ ଅଗରୁ ବହିଟି ବାହାର କରିଥାନ୍ତେ, ପାରିଲେ ନାହିଁ । ପ୍ରଥମ ସଂସ୍କରଣ ସେ ଛାପିବାକୁ ମୁଁ ଅନୁମତି ଦେଇଚି ।

"ଭୂତ" ଅଭିନୟ ପରେ ଘରକୁ ଚିଠିଏ ନୂଆ ପ୍ରେରଣା କରି ଛପାଯୋଗ୍ଯ କରିଦେବାକୁ ମୋତେ ପଡ଼ିଲା । କହୁଣିତ ଏଇଟା ଭୂମ୍ବାରର ବେଉସା ।

ଧକ୍କାରେ କ ଚିଠିଏ ସୁଖ ଥାଏ । ଅଲପୁଆ ପତ୍ର ଭାଙ୍ଗିଯାଏ, ତା ଛଡ଼ା ଅନ୍ୟ ଥୋକେ ନୂଆ ଗଢ଼ା ହୁଅନ୍ତି । ଦେଶର ମଙ୍ଗଳ ସେଇତ ହେଲା ।

ଗରୀବ ମୁଁ, ପଇଅ ମାଂସ ପରଶିବାର ବଳ ନାହିଁ । ଖଣ୍ଡିଆ ଗୁଳ, ନୂଖୁରୁ ଭାତ—ଏଇତକ ମୋର ସମ୍ପତ୍ତି । ସ୍ନେହରେ ବାଢ଼ିଥିଲି, ମୋ ଭଲ ଭଉଣୀ ଆଦରରେ ନେଇଚନ୍ତି—ମୋ ଶ୍ରମ ସାର୍ଥକ । ,

ସେହି ସ୍ଥିର ଭଗ୍ନୀଙ୍କି ଆଜ ଜଣାଉଛି ମୋର ପ୍ରାଣଭରି କୃତଜ୍ଞତା । ଯେତେଦିନ ବଞ୍ଚିଛି ତାଙ୍କ ସେବାରେ ଜୀବନଟି କଟିଯାଉ—ଏତିକି ମୋର ମାଆ ପାଖେ ଅଳି ।

ସେବକ

**କାଳୀଚରଣ**

---

ଭ୍ରମ ସଂଶୋଧନ

ସ୍ଥିର ବନ୍ଧୁ ଛପାହେଲେ ଗୋଟାଏ ଦୃଶ୍ୟ ଭୁଲରେ ଠିକଣା ଆସନରେ ଛପା ହୋଇ ପାରିନାହିଁ । ଦୋଷ ମାଗୁଛି । ସବା ପଛରେ ଦିଆଯାଇଛି । ଦୟାକରି ସେଇଟିକୁ ମିଳାଇ ନେବାକୁ ଅନୁରୋଧ । ଦ୍ୱିତୀୟ ଅଙ୍କ ଦ୍ୱିତୀୟ ଦୃଶ୍ୟ ଛପା ବନ୍ଧୁର ୩୨ ପୃଷ୍ଠା ପରେ ଏ ଦୃଶ୍ୟ ମିଶିବ ।

## ଶ୍ରୀମତୀ ସରଳାଦେବୀଙ୍କ ମ୮।୧୧।୪୫ "ଭ୍ରାନ୍ତ" ନାଟକ ଓ

### ନାଟ୍ୟକାରଙ୍କ ସମ୍ବନ୍ଧେ ଦୁଇପଦ ।

'ଭ୍ରାନ୍ତ' ନାଟକର ପ୍ରାରମ୍ଭିକ ଉନ୍ମୋଚନା ହୋଇଥିଲା ମୋର ଦ୍ୱାରା [illegible] ଶତ ରଜନୀର ଉଦ୍‌ଯାପନର ଶୁଭ ଅବସରରେ ପ୍ରଥିତ ଯଶା ଉତ୍କଳର ଭବମୌଳିମଣ୍ଡନ ନାଟ୍ୟକାର ଶ୍ରୀ କାଳୀଚରଣ ପଟ୍ଟନାୟକଙ୍କ ଗୌରବମୟ କୃତିତ୍ୱ ନେଇ ମୁଁ ଆତ୍ମପ୍ରସାଦ ଅନୁଭବ କରୁଛି ।

ଉତ୍କଳର ନାଟ୍ୟକାରଙ୍କ ରଚନା ମଧ୍ୟରେ ନାଟ୍ୟାଗ୍ରଣୀ କାଳୀଚରଣଙ୍କ ନାଟକ ସବୁର ଉପରେ । ନାଟକ ତାଙ୍କର କ୍ଷୁଦ୍ର ବିଷୟବସ୍ତୁ ଗ୍ରହଣରେ ପଥ ବନ୍ଧୁର ଜଟିଳ ନୁହେଁ । ନିଗୂଢ଼ ବାସ୍ତବତା ଉପରେ 'ଭ୍ରାନ୍ତ' ନାଟକର ଭିତ୍ତି ଗଠିତ ହୋଇଥିବାରୁ ଏହା ଶତରଜନୀର ଉତ୍ସବର ଦୀପାଳି ଜାଳିପାରିଛି । ବାସ୍ତବତାକୁ ଭିତ୍ତି ନ କରି ନାଟକ ଛିଡ଼ା ହୋଇ ହୁଏନାହିଁ ସତ୍ୟ, କିନ୍ତୁ ଏହା ବୋଲି ବାସ୍ତବତା ନାଟ୍ୟ ରଚନାର ଏକମାତ୍ର ସାରକଥା ନୁହେଁ । ଅବାସ୍ତବତା ନ ଥିଲେ ବା ଅପ୍ରତ୍ୟକ୍ଷ ମାନବ ମନର ଅବସ୍ଥାକୁ ସୁକୌଶଳ ସୁନ୍ଦର କ୍ରିୟାଦ୍ୱାରା ଦୃଶ୍ୟ ନ କରିପାରିଲେ ନାଟକ ହୁଏନାହିଁ । ଏହି କାରଣରୁ ଦ୍ୱାପରଯୁଗର ବୃନ୍ଦାବନରେ ରାସଲୀଳାର ଅଭିନୟ ଭାରତବର୍ଷର ମନକୁ ଏତେ ନିବିଡ଼ଭାବରେ ପ୍ରଭାବିତ କରେ । ରାମାୟଣ, ମହାଭାରତ ଉପାଖ୍ୟାନ ଉପରେ ନାଟକ ରଚିତ ହୋଇଥିଲେ ତାହା ପୁରୁଣା ଲାଗେନାହିଁ । କିନ୍ତୁ, କେବଳ ଅବାସ୍ତବତା ନେଇ ମଧ୍ୟ ନାଟକ ରଚନା ହୁଏନାହିଁ । କାଳୀବାବୁ "ଜୟଦେବ" ନାଟକରେ

ଯେସବ ମନୁଷ୍ୟ ଜୀବନର ଧେଯ୍ୟ ଓ ଶ୍ରେୟର ଅପାର୍ଥିବତାକୁ ବାସ୍ତବ ତାର ପୃଷ୍ଠ ଦେଇ ଉତ୍କୋଳକର୍ଷ ଦେଖାଇପାରିଛନ୍ତି ଓ "ବୋଝାର ଭଳି ନିରର୍ଥ ବସ୍ତୁତନ୍ତ୍ରକ ଦୃଶ୍ୟନାଟ୍ୟର କ୍ରିୟା ଧୋପଟଳର ପଶ୍ଚାତ୍ତାରେ ସିଦ୍ଧିଲାଭ କରିଅଛନ୍ତି, ଭାରତ ନାଟକ ଏହି ଜିଜ୍ଞାସୁଭାବର ଅନୁମୋଦକ ହେବାଦ୍ୱାରା ନାଟ୍ୟାଗ୍ରଣୀ ଶ୍ରୀ କାଳୀଚରଣଙ୍କୁ ଗୋଟିଏ ପରମାସିଦ୍ଧି ଦେଇଛି । ଏହି ନାଟ୍ୟରଚକ ତାଙ୍କ ସାହିତ୍ୟ ଓ ସଙ୍ଗୀତ ବାଦ୍ୟର ଅଭିନବ ସାଧନାରେ ଜଳିଲ ଭଳି ଉଦବ୍ରେ ଓ ଦୁର୍ଭାଗିନୀ ଜନନୀର ସିଦ୍ଧସାଧକ । ସେ ଜନ୍ମଭୂମି ଜନନୀର ବରପୁତ୍ର । ଏ ଯୁଗରେ, ଏ କାଳରେ ତାଙ୍କଭଳି ସିଦ୍ଧସାଧକ ଜୀବିତ କୃତକଳା ସେବକ ପୁରୁଷଙ୍କ ସମକକ୍ଷ ହୋଇ ଦ୍ୱିତୀୟ କୃତସାଧକ ଆଜି ସମ-ସାମୟିକ କେହି ନାହାନ୍ତି କହିଲେ ବାହୁଲ୍ୟ ହେବ ନାହିଁ । ସେହି କାରଣରୁ ତାଙ୍କ ସମ୍ବନ୍ଧରେ ପ୍ରଶଂସା କରିବାକୁ ସଙ୍କୋଚ ଲାଗେ । କାରଣ ତାଙ୍କର ଯଥାର୍ଥ ଦାବୀ କେତେ ତାହାର ପରିମାପକ ତାଙ୍କ ଜୀବଦ୍ଦଶାରେ କଳିବା ଅସମ୍ଭବ । କେବଳ ମନେହୁଏ ଯାହା ଓ ଯେତିକି ତାଙ୍କ ସମ୍ବନ୍ଧରେ କହିବୁଁ ହୁଏତ କମ୍ କରି କୁହାହେବ ।

ଆମ ଓଡ଼ିଆ ଦେଶରେ ନାଟକର ସମାଲୋଚନା ହୁଏନାହିଁ । ଖେଳେଇ ବଗୁଲେଇ ଛୁଁଚୁଲେଇ ହବା କି କଣ୍ଟାବାଡ଼ରେ ଲଗା ପକାଇ ଶିକାର ହୋଇ ଥାଣି କଲକରିବା ଓ ଶୋଧିବାକୁ ଅମ୍ଭେମାନେ ଅନେକରୁ ସମାଲୋଚନା ବା ଅଦର୍ଶ; କାରଣ ସାହିତ୍ୟ, ନାଟକ, କାବ୍ୟ, ଗୀତ, ସଙ୍ଗୀତ ବାଦ୍ୟାଦି ସମାଲୋଚନା କରିବାକୁ ଗୋଟିଏ ମାନଦଣ୍ଡ ଏ ପର୍ଯ୍ୟନ୍ତ ନିରୂପିତ ହୋଇନାହିଁ । ତାର କାରଣ ଗାନ୍ଧର୍ବ ବିଦ୍ୟାକୁ ଜୀବନର ସମ୍ବଳ ଓ ଶ୍ରେଷ୍ଠ ସାଧନା ବୋଲି ଏ ଦେଶର ବହୁ କଳାକାର ଗ୍ରହଣ କରି ସାଧନାରେ ସିଦ୍ଧି ଲଭିନାହାନ୍ତି । ସେହି

କାରଣରୁ ଏ ସମ୍ବନ୍ଧରେ General standard ଗୋଟିଏ କେହି ଶୁଣିବ ବାନ୍ଧିବା ପାଇଁ ତିଆର କରି ନାହାନ୍ତି । ଦେଖିବାକୁ ମିଳେ ସସ୍ତ ଦର୍ଶକ ନାଟକର ମଧ୍ୟ ଦର୍ଶକ ହୋଇଥାନ୍ତି । ବିସ୍ତର ଓ ନଗ୍ନ ବିଭତ୍ସରସଂଯୁକ୍ତ ଉଚ୍ଛୁଳ ପଡ଼ୁଥିବା ଦୃଶ୍ୟ ଅଭିନୟମାନଙ୍କରେ ହାତତାଳି ବର୍ଷଣ ହୁଏ । ଅପର ତଥାକଥିତ ରସଗ୍ରାହୀ ବା ରସିକ ସୁଧୀ ବୋଲାଉଥିବା ବ୍ୟକ୍ତିଗଣଙ୍କ ରୁଚି ଏତେ ସୂକ୍ଷ୍ମ ଓ ଜଟିଳ ଯେ, ନାଟ୍ୟକାରଙ୍କର ରଚନାରେ ସୂକ୍ଷ୍ମାଂଶ ଗ୍ରହଣ କରିବାକୁ ବଡ଼ କୁଣ୍ଠିତ ହୁଅନ୍ତି । ଦେଶ, କାଳ, ପାତ୍ରର ସୀମାବଦ୍ଧ ଗଣ୍ଡିକୁ ଅତିକ୍ରମ କରିବା କବିଚନ୍ଦ୍ରଙ୍କ ପକ୍ଷରେ ସର୍ବଥା ସମ୍ଭବ ନୁହେଁ । କିନ୍ତୁ ଏହି ସୀମିତ ପରିବେଷ୍ଟନରେ ସେ ଜାତିକୁ ଯେ ରସ ଖାଦ୍ୟରେ ଉପେଇ ନେଇଛନ୍ତି, ଏଥିରେ ତାଙ୍କୁ ବାହାଦୁରି ଦେବାକୁ ହୁଏ । ଅବହାଉଆ, ଦେଶ, କାଳ, ପାତ୍ରକୁ ବଦଳାଇ ସୁନ୍ଦର ଓ ଶିବ ସତ୍ୟଙ୍କର ପୂର୍ଣ୍ଣ ପ୍ରକାଶ ନିମନ୍ତେ ଯେ ବିପୁଳ ଆୟୋଜନ ପରିସର ଦରକାର, ଓ ସମସ୍ତ ଦରକାର, ତାହା ଆମ ଉତ୍କଳ ନାଟ୍ୟାଗ୍ରଣୀଙ୍କର ସୀମିତ ଶକ୍ତିରେ ସମ୍ଭବପର ନୁହେଁ—ଏହାର ବଡ଼ କାରଣ ସବୁଠାରୁ ବେଶି ଅର୍ଥାଭାବ । କାରଣ ମନୁଷ୍ୟର ଜୀବଧର୍ମ ବା ପେଟରୁ ଅର୍ଥ ବଳକି ନ ପଡ଼ିଲେ ଦେଶରେ କଳାକାରମାନଙ୍କର କଳାସାଧନାକୁ ଜୀବନର ସାରଧର୍ମ କରି ସଙ୍ଗୀତ, ସାହିତ୍ୟ, ନାଟକ, ନୃତ୍ୟ, ବାଦ୍ୟ, ଚିତ୍ର ପ୍ରଭୃତି କଳାର ପ୍ରୟୋଜନୀୟ ବିକାଶ ଆଦୌ ସମ୍ଭବପର ହୁଏନାହିଁ । ସେଥିପାଇଁ ଧନଶାଳୀ ଦେଶର କଳାକାର, ପରାଧୀନ ଦରିଦ୍ର ଦେଶର କଳାକାରଙ୍କର ପାର୍ଥକ୍ୟ ଅତିରିକ୍ତ ପାଙ୍କରେ ଧରିବାକୁ ହୁଏ । କିନ୍ତୁ ଆମ ଦେଶର ଯେପରି ସାଧାରଣଙ୍କର ଅବସ୍ଥା ଓ କଳାକାର ଅସ୍ମାର ସ୍ୱାଧୀନ ବନ୍ଧନମୁକ୍ତ ବିକାଶ ପଥରେ ଯେ ପ୍ରଚଣ୍ଡ ଗଜଦନ୍ତ ବାଧାବିଘ୍ନ ଉପୁଜନ୍ତେ ସିଙ୍ଗାନ୍ ମୂଳ ସାମନାରେ ଥାଏ ସଙ୍କୁଚିତଭାବରେ

ତାଙ୍କୁ ଅଯଥା ଖର୍ଚ୍ଚ କରିବାକୁ ହୋଇଛି, ସେଥିରୁ ବୁଦ୍ଧିଜୀବୀ ବର୍ଗଟିଏ କବିଚନ୍ଦ୍ର କାଳୀଚରଣଙ୍କ ନିକଟରେ ଓଡ଼ିଶାର ନାଟ୍ୟାମୋଦୀମାନେ ଚିରଦିନ କୃତଜ୍ଞ ବୋଧ କରିବେ । ଆମ ଦେଶରେ କେତେକ ନାଟ୍ୟକାରଙ୍କର ରଙ୍ଗମଞ୍ଚ ସମ୍ବନ୍ଧରେ ଅଭିଜ୍ଞତାର ଅଭାବ ପରିଲକ୍ଷିତ ହୁଏ । ପୁଣି ଭାଷାର ପରିବର୍ତ୍ତନଶୀଳତା ସମ୍ବନ୍ଧରେ ଜ୍ଞାନ ଅଗଭୀର ଥିବାରୁ ଲଳିତ ଶବ୍ଦ ଯୋଜନାରେ ନାଟକ କେବଳ ପ୍ରାଣବନ୍ତ ହୁଏ ବୋଲି ବିଶ୍ୱାସ ଥିବାରୁ ନାଟକ କେତେବେଳେ ରଙ୍ଗମଞ୍ଚ ଦେଖେ ନାହିଁ । ନାଟକ-ସାହିତ୍ୟ କାବ୍ୟ-କବିତା ଗଳ୍ପ-ଉପନ୍ୟାସଠାରୁ ପୃଥକ୍ କଳାଶ ଓ ସେହି ସମ୍ବନ୍ଧରେ ଦୃଷ୍ଟିଯୋଗ୍ୟ ଲେଖାର ଶବ୍ଦ ଗୁରୁତ୍ୱ ସ୍ୱତନ୍ତ୍ର । ନାଟକର ଏ ସମ୍ପର୍କରେ ସ୍ଥାନ ନାହିଁ । ତାହାପାଇଁ Flexibility ବା ସଂପ୍ରସାରଣ ଦରକାର । କାରଣ ନାଟକ movement, action, motivation କ୍ରିୟା ପରିବର୍ତ୍ତନ ଉପରେ ପ୍ରତିଷ୍ଠିତ। ଚିତ୍କାର କଲେ ବା ତା'ଦ୍ୱାରା ତାଳିବାଜ 'ବାହାବା' ପାଇଲେ ନାଟକର ଆଦର୍ଶ ହୁଏନାହିଁ । ଆମ ଦେଶର କେତେକ ନାଟ୍ୟକାରଙ୍କ ପାତ୍ରପାତ୍ରୀ କଥା କହନ୍ତି ନାହିଁ—ଆକାଶପଟେ ଚିତ୍କାର କରନ୍ତି । ପ୍ରାଚୀନତା ନବୀନତାର ସ୍ଥାନ ବା ତାକୁ ବଞ୍ଚାଇବାର ପ୍ରୟାସ ସ୍ଥଳ-ନାଟକୀୟ ବିଷୟବସ୍ତୁ ନୁହେଁ । ମାନବପ୍ରାଣରେ ଯେ ଗଭୀର ଶୋକ, ଦୁଃଖ, ହର୍ଷ, ପ୍ରୀତି ରହିଛି, ତାହା ଫୁଟାଇବାକୁ ଶବ୍ଦାଳଙ୍କାର ଆବଶ୍ୟକ ନୁହେଁ । ଏହି ତାପ ଓ ବ୍ୟଥା ଫୁଟାଇବାକୁ ଆମର ନିତି କଥାକୁହା ଭାଷାର ଶବ୍ଦ ଯଥେଷ୍ଟ । ଏ ଦିଗରୁ 'ଭ୍ରାନ୍ତ' ନାଟକର ଲେଖା ଅନବଦ୍ୟ । ନାଟକକାର ହୃଦୟାବେଗ ସଂଯମ ଅଭାବରୁ ଅଭିନୟ ଭିତରେ ଉପଦେଶ ଦେବାକୁ ଯାଇ ଅମିତ୍ରାକ୍ଷର କାବ୍ୟରେ ଯେ ନୀତିଶିକ୍ଷା ଦେଇଥାନ୍ତି କବିଚନ୍ଦ୍ରଙ୍କ ନାଟକରେ ତାହା ନାହିଁ । ଏହି ସଂଯମ ତାଙ୍କୁ ଶ୍ରେଷ୍ଠ ନାଟ୍ୟକାର କରିଛି । ନାଟ୍ୟକାର ଶିବବ୍ରତଙ୍କ

ସ୍ଵାସ୍ଥ୍ୟ ପ୍ରକାଶର ଆଦର୍ଶ ଥୋଇବ—ଜୀଜ୍ଞଣିଆ ଦେବା ପଣ୍ଡିତ ସେ ନୁହନ୍ତି । ଦର୍ଶକ ସଭିଜନଙ୍କୁ ଶିକ୍ଷିତ ଜାତର ମାନଦଣ୍ଡ—ବକ୍ତୃତାଙ୍କୁ ନୁହେଁ । ନାଟକ ଲେଖାରୁ ମାନାଙ୍କନ ଖୁବ୍ ବଡ଼ କଥା—ଏ Sense of proportion ଖବ୍ କମ୍ କଳାବତଙ୍କର ଥାଏ—କାଳୀବାବୁଙ୍କର ତାହା ଅଛି ।

କାଳବାବୁଙ୍କ ସମ୍ବନ୍ଧରେ ମୋର ପରିଚୟ—ତାଙ୍କର ମନ ସମ୍ବନ୍ଧରେ ମୋର ପରିଚୟ ବୋଲି । ତାଙ୍କର କାଉ 'ଭାତ'ରେ ଆବଦ୍ଧ ରହିଲେ ହେବନାହିଁ, ତା ସହିତ 'ଦୁଧ' ଦରକାର । ଦେହଠାରୁ ଚିତ୍ତ ଓ ପ୍ରାଣ ବଡ଼ । ସେହିପରି ଜାତିକୁ ଘନଠାରୁ ତରଳ ବା Solid ଠାରୁ liquid ର କଦର ଏ ଦୁନିଆରେ ବେଶି । ଦୁଧରେ ଯେ ଅମୃତ ରହିଛି, ସେହି 'ମାନସ ଖାଦ୍ୟ' ଗ୍ରହଣ କରିବାକୁ ଦେଶରେ ମତାବରଣ ସୃଷ୍ଟି କରିବା ଓ ପରିବେଷଣୀ ତିଆର କରିବା କାମ ତାଙ୍କ ଉପରେ ବାକୀ ଅଛି । ପୂର୍ବେ ଯେ ନାଟ୍ୟାଗ୍ରହୀଙ୍କ ମନ ସମ୍ବନ୍ଧରେ ମୋର ପରିଚୟ କଥା ଲେଖିଛି, ସେହି ପରିଚୟ ମୋତେ ଜୀବନର ମଧ୍ୟାହ୍ନ ବା ସାୟାହ୍ନ କାଳରେ ମଧ୍ୟ ଭବିଷ୍ୟତ ପାଇଁ ଆଶାବାଦୀ କରିଛି ଏହି କାରଣରୁ ଯେ—କାଳୀବାବୁ ତାଙ୍କର କଳାଦ୍ଵାରା ଜାତର ଦୈହିକପୁଷ୍ଟି ଅପେକ୍ଷା କେବଳ ମନ ନ ଦେଇ ମାନସିକ ପୁଷ୍ଟି ଓ ବିକାଶ ଅପେକ୍ଷା ଲକ୍ଷ୍ୟ ରଖିବେ ।

ଆଜି ଏ ଦେଶରେ କଙ୍କାଳର ଶୋଭାଯାତ୍ରା ଚାଲିଛି ମଶାଣୀ ଭୂଇଁକି । ଘରେ ଖାଦ୍ୟ ଜୁଟୁନାହିଁ, ଦେହରେ ଲୁଗା ନାହିଁ, ମନୁଷ୍ୟ ମନୁଷ୍ୟକୁ ପଶୁଠାରୁ ବ୍ୟବହାର କରି ତାର ରକ୍ତ ଶୋଷି ନିଜର ସ୍ଵାର୍ଥ ଓ ପୁଷ୍ଟିସାଧନ କରୁଛି—ଯନ୍ତ୍ରର ଅପବ୍ୟବହାରରେ ।

କିନ୍ତୁ ଏ କଣ ଚିରନ୍ତନୀ ? ଏହି "ଚିରନ୍ତନୀ" ଅନ୍ତତଃ ନାଟ୍ୟାନୁରାଗୀଙ୍କ ଦୃଷ୍ଟି ଆକର୍ଷଣ କରିବାପାଇଁ ପ୍ରୟାସ କରୁଛି ମୁଁ କାରଣ ମୋର ବିଶ୍ୱାସ, ବର୍ତ୍ତମାନ ଉତ୍କଳଖଣ୍ଡରେ "ଚିରନ୍ତନୀ"କୁ ସୃଷ୍ଟି କରିବାର ସାହସ 'ଭକ୍ତ' ନାଟ୍ୟକାରିଙ୍କ ଛଡ଼ା ଅନ୍ୟ କାହାରି ପାଖରେ ସମ୍ଭବତଃ ନୁହେଁ । ଉତ୍କଳର କଳାପ୍ରିୟ ପାର୍ଥକପାଟିକା ନାଟ୍ୟାମୋଦ ନଗରୀବାସୀ ତାଙ୍କର ଅମୃତ ଲେଖନୀ ଅଢ଼େ ହୃଷ୍ଟ ହୋଇ ରହିଛନ୍ତି । ଏହି ନୈବେଦ୍ୟରେ ସାଧକ ତାର ଅନ୍ତର୍ଦୃଷ୍ଟିପାତ କରି ଅସ୍ପାର, ଅନ୍ତରର, ସନାତନ ସତ୍ୟର— ନିଜକୁ ପରଖୁ, ସେ ତା'ର ନିଜଟାଣି ନା ଭୋଟି କଙ୍କାଳମାଳିନୀ କବନ୍ଧବିଳାସିନୀ ବିଚ୍ଛିନ୍ନ ଉତ୍କଳର ଅଗାମୀ କାଳର ନବନାଟ୍ୟ ପାଇଁ ଲେଖନୀ ଧରିବ ? ଅପ୍ରତୁଳ ନାଟ୍ୟକାର, ଯାଙ୍କ ମୌନ ଅନ୍ତର୍ଦୃଷ୍ଟି ବିବେକ ପୁଞ୍ଜ ତାଙ୍କୁ ପଥ ନିର୍ଦ୍ଦେଶ କରିବ ।

ସ୍ୱା— ଶ୍ରୀମତୀ ସରଳାଦେବୀ
ତା ୮।୧୧।୦୫

---

# ଚରିତ୍ର :—

## ପୁରୁଷ :—

ବୀରବିକ୍ରମ ସିଂହ —ଜମିଦାର
ଜୟୀ —ଜମିଦାର ପୁତ୍ର
ଅନନ୍ତ —ଜୟୀର ବନ୍ଧୁ, ଦେଶକର୍ମୀ
ଧାମା —ଜମିଦାରଙ୍କ ପିଅଦା
ବାଲ୍ୟା — ,, ଗୃହଚର
ଚଇତନ ଓ ରତନା —ଗ୍ରାମବାସୀ
ଝିଟିନ —ଜମିଦାରଙ୍କ ଗୁମାସ୍ତା
ରଦୁଦାସ —ଗୃହୀ
ଡାକ୍ତର, କୃଷକନେତା, ହୁଜା, ଚପ୍ରାସୀ, ମଫସଲ ଗୁମାସ୍ତା, ସ୍ୱାମୀଜୀ, ଭିଖାରୀ, ବାଙ୍ଗାଳଦଳ ଓ ଗଉଡ଼ ଇତ୍ୟାଦି ।

## ସ୍ତ୍ରୀ :—

ବିଜୟା —ଜମିଦାର କନ୍ୟା
ରମା —ରଦୁଦାସର ସ୍ତ୍ରୀ
ସାବି —ରମାର ସଙ୍ଗିନୀ
କଳକ, ସର ଇତ୍ୟାଦି ଗ୍ରାମ୍ୟବାଳିକା ଓ ଗଉଡୁଣୀ ।

---

# ଉପକ୍ରମ :—

[ ବସ୍ତ୍ରୀର୍ଣ୍ଣ ଧାନକିଆରୀ ଦ୍ୱାରରେ ଗୃଷୀମାନେ ଗାଉଥିଲେ ]

ଭାତ !

ଭାତ !

ଭାତ !

ଭାତଲାଗି ବାଦନା ରେ ଥାଉଁ ଗୋଡ଼ ହାତ ।

(ତୋର) ଥାଉଁ ଗୋଡ଼ହାତ । ୦ ।

ଦୁଃଖୀ ଅମେ କିଆରୀରେ ଖାଟୁଁ ଦିନରାତି

ଲଙ୍ଗଳାରେ ଚଷିଲ୍ ମାଆ ଛାତିକି ତ ନିତି

ପର ଗୋଷ୍ଠି ଅପେ ସର କି ବୁଝି ପାରୁଛ ? ୧ ।

ଏଇ ମାଟି ଆମ ମାଆ ରତନ ଗରଭା

ତେଲ ପେଣ୍ଡ ନୁଖରି ତ ନିତି ତମ ଗଭା

ମାଆକୁ ନ ଚିହ୍ନି ତୁମେ ମାରୁଛ ତ ଲାତ । ୨ ।

ମାଡ଼, ହାଣ, ତାଡ଼, ଖୋଳ—ସହେ ମାଆ ସବୁ

ତମଲାଗି କାଳ କାଳ ସହୁଥିବ ବାବୁ !

ତା ବିନା କେ ଭାତ ଦେବ ତୋ ମୁହେଁ କହତ ? ୩ ।

ମାଆ କୋଳେ ଗଢ଼ି ଅମେ ପାଚିଲା କିଆରୀ

ପବନ ଖେଳାଇ ଦିଏ ସୁନାର ଲହରୀ

ଫଟା ବୁକୁ ଫୁଲେ ଦେଖି ତୋ ହାତେ ଦାଆଟ । ୪ ।

---

# ପ୍ରଥମ ଅଙ୍କ

## ପ୍ରଥମ ଦୃଶ୍ୟ ।

(ଭାଦ୍ରବ ମାସ । ପାଣିଖିଆ । ସହରତଳି ହରିପୁର ଗାଁ, ମାଳର ଧାନ କିଆରି । କିଆରି ମଝିରେ ହୁଡ଼ ବାଟଟିଏ ଖୁବ୍ ଦୂରକୁ ପଡ଼ିଛି । ତାହାର କଡ଼ରେ ଗୋଟିଏ ବଡ଼ ଗଛ । ଦୂରରୁ ଶୁଭୁଛି ହଳିଆ ଗୀତ, ଧାନ କଟାଳିଙ୍କର । ଏତିକିବେଳେ ସାଇକଲ୍ ଚଢ଼ି ଗାଁ ଜମିଦାର ପୁଅ ଜଯ୍ତୀବାବୁ ସେ ବାଟରେ ଯାଉଥିଲେ । ଦେଖିଲେ ଅଗ-ଚକରେ ପବନ ନାହିଁ । ସାଇକଲରୁ ଓହ୍ଲେଇ ପମ୍ପ ଦେବାକୁ ଲାଗିଲେ । ରଘୁଦାସର ଝିଅ ରମା ବାପା ପାଇଁ ଭାତ ନେଇ ଏଇ ଆଡ଼କୁ ଚାଲିଛି । ଜଯ୍ତୀ ଦୃଷ୍ଟି ପଡ଼ିଲା ତା ଉପରେ—ରମା ଓଢ଼ଣା ଟାଣି ମଫସଲର ଲଜ୍ଜାଶୀଳା ବାଳିକାପରି ବାଟ ଅଡ଼େଇ ଚାଲିଗଲା ତାର ବାପର ସନ୍ଧାନରେ—ଜଯ୍ତୀ ତାର ଯିବାବାଟକୁ କିଛି ସମୟ ଚାହିଁ ସାଇକଲ୍ ଚଢ଼ି ଚାଲିଗଲେ )

ରମା—(ଗଛମୂଳକୁ ଆସି) ଭାତ ! ଭାତ ଆଣିଚି ବାପା, ବାପା—

(ରମା ବାପ ରଘୁଦାସ ଦୂରରୁ ଝିଅର ଡାକ ଶୁଣି ଧୀରେ ଧୀରେ ପାଖକୁ ଆସିଲା । ଟୋକେଇଟାକୁ ଚାହିଁ ଦେଇ ହାଲ ପୋଛୁ, ଝାମ୍ପଟା ମୁଣ୍ଡରୁ କାଢ଼ିଦେଲା )

ରମା—ନାଅ ବାପା ! ବେଳ ଅଧି ତନପହର ହବ । ଭାତ ଗଣ୍ଡାକ ଖାଇ ଦେଇ—

ରଘୁ—(ଡାଢେକା ହୋଇ) ଭାତ !

ରମା—ହଁ ବାପା ! ଅମ ଘରେ ତ ଚାଉଳ ନ ଥିଲା, କମଳୀନାନୀ ଘରୁ ଉଧାର କରି ଦକୁଅା ଚାଉଳ ଅଣିଥିଲି ଯେ—

ରଘୁ—କମଳୀ ଘରେ ଫେର୍ ଅମକୁ ଉଧାର ଦେଲା ? ହଉ, ଅଣ, ରଖ—( ରମା ଥୋଇଲା—ରଘୁ ଖାଇ ବସିଲା—ଜମିଦାରଙ୍କ ଗୁମାସ୍ତା, ପିଅଦା ଓ ନାଗରାବାଲା ହଣ୍ଟା ସହିତ ପ୍ରବେଶ କରି ନାଗରା ଦେଲେ, ରଘୁ ଭାତ ଗୁଣ୍ଡାଟି ପକେଇଦେଇ ଉଠି ଠିଆ ହେଲା )

ଗୁମା—ରଘୁଦାସ ! ଖଜଣା ?

ରଘୁ—ଦେଇ ତ ପାରୁନାହିଁ ଅଜ୍ଞା, କାଳ ମହୁରଗରେ ପେଟକୁ ବୋଇଲେ ଚିଟେକ ଅଣ୍ଟୁନାହିଁ ।

ଗୁମା—ସେ କୈଫିୟତ୍ ତୁ ଜମିଦାରଙ୍କୁ ଦବୁ, କଏ ତୋର ଗୁହାର ହେଉନାହିଁ ଯେ, ସବୁଥର ତୋ ଦୁଆରକୁ ଦଉଡ଼ୁଥିବ !

ରଘୁ—ଯାହାଲା କଅବା, ଦନ ଦଇଟା ତକେଇଲେ ଖଜଣା ନେଇ ଗୋଡ଼ତଳେ ହାଜର କରିଦେବି ।

ଗୁମା—ବାବୁ, ଗୋଡ଼ତଳେ ହାଜର କରିବା ଦର୍କାର ନାହିଁ । ଅଟେ ତୋ ଗୋଡ଼ତଳକୁ ଅସିଚୁଁ, ଦେଲୁ ।

ରଘୁ—ଏଇନାଗେ ଅଉ କାହିଁ ବାବୁ ? କାଲିଠୁଁ ଘରେ ଚୂଲି ଲାଗି-ନଥିଲା ଯେ—

ଗୁମା—ଅରେ, ସେ କଥା କହୁ ମୁଣ୍ଡ ଗରେଇଲେ ଚଳିବ ନାହିଁ । ସମସ୍ତେ ତ ସେମିତ କହୁଲ, ଅଉ ଜମିଦାର କଣ ଭୋକ ମରିବେ ? ଖଜଣା ଏଇନେ ଦବୁ କି ନାହିଁ, ପଦେ କଥା ।

## ଦ୍ୱିତୀୟ ଦୃଶ୍ୟ

—ପଥ—

( ଗୋଟିଏ ପାଖରେ ଅଇଁଠା ଖଲି ପତର ପଡ଼ିଛି । ମେହେନ୍ତର ଆସି ଝାଡ଼ୁ ମାରି ଗଦା କଲା । ସେ ଝାଡ଼ୁ ମାରୁଥିବା ବେଳେ, ଗୋଟି-କେତେ ନିରନ କଙ୍କାଳସାର ଭିକାରି—ପିଲା-ବଡ଼, ବାଳକ-ବାଳିକା, ଉଦ୍‌ଗ୍ରୀବ ନୟନରେ ଚାହିଁ ଥିଲେ ସେ ଖଲିରେ ଲାଗିଥିବା ଗୋଟି-କେତେ ଭାତକୁ । ମେହେନ୍ତର ଝାଡ଼ୁ ମାରିସାରି ଗଲାପରେ ସେମାନେ ଦଉଡ଼ିଆସି ଖଲିକୁ ଅନାଇଁ, ସେଥିରେ ଲାଗିଥିବା ଭାତ ଛଡ଼ାଛଡ଼ି କରି ଖୁଣ୍ଟି ଖାଇଲେ । ଏତିକିବେଳେ ଆସିଲେ ଜୟୀ ଆଉ ତାର ବନ୍ଧୁ ଅନନ୍ତ । ଦୁହିଁଙ୍କ ହାତରେ ଦୁଇଖଣ୍ଡି ସାଇକେଲ, ବେଲ୍ ଦେଲେ ବି ଭିକାରିମାନେ ବାଟରୁ ଘୁଞ୍ଚୁନାହାନ୍ତି । ଦୁହେଁ ଠିଆହେଲେ । ଦୁଇଟି ପିଲା ଖଣ୍ଡିଏ ପତରୁ ଗୋଟିଏ ଦଉଟି ଭାତ ନେବା ପାଇଁ କଳିକରି ମାଡ଼ଗୋଳ ହେଲାବେଳେ ତାଙ୍କୁ ଛଡ଼ାଇ ଦେବାକୁ ଯାଇ ଅନନ୍ତ ବାବୁ ସାଇକଲଟା ବଢ଼େଇ ଦେଲେ ଜୟୀ ହାତକୁ ) ।

ଅନନ୍ତ—ଧରି ତ ଭାଇ ଟିକିଏ ( ପିଲାମାନଙ୍କ ମାଡ଼ଗୋଳ ଛଡ଼ାଇ ) ଛି, ଛି, ସେ କଅଣ କରୁଛ ?

ଭିକାରି—ଭାତ ! (ଅନ୍ୟ କେତେଜଣ ଭିକାରି ଭିକାରୁଣୀ ସେ ବାଟେ ଗଲେ )

ଅନନ୍ତ—(ବ୍ୟଥିତକଣ୍ଠରେ) ହଇରେ ପିଲା ! କିଏ ଅଛି ତୋର ଆଉ ?

ପିଲା—କେହି ନାହିଁ ମୋର । ଭାଇ ଭଉଣୀ ନଖାଇ ନପିଇ ମରିଗଲେ ।

ଅନନ୍ତ—ଜୟୀ ! ତୁ ପରା ଆଜି ଆମ ଗ୍ରାମ ଗାଁଅରୁ ଫେରୁଚୁ, ମଝିରେ ମଝିରେ ଗାଁଅ-ଗହଳରେ ଗୋଡ଼ ଦେଲେ ଏମିତି କେତେ ଦୃଶ୍ୟ

ତୁ ଦେଖିବୁରେ ! କେତେ ଯେ ଏମିତ ଅନ୍ତସ୍ଥଳରେ ହଁଲ-ପଡ଼ୁଛନ୍ତି, ତାର ଖବର ରଖୁଚ କିଏ ? ଏ ତ ସାମାନ୍ୟ !

ଉମ୍ପୀ—ଉପାୟ ନାହିଁ କିଛି ଏମାନଙ୍କୁ ବଞ୍ଚାଇବାର ?

ଅନନ୍ତ—ଯାହାଙ୍କ ହାତେ ଅଛି, ସେ ମନ କଲେ ତ !

ଉମ୍ପୀ—କଅଣ କରିବାକୁ ତୁ କହୁଚୁ ଯେ ?

ଅନନ୍ତ—ଧର ଗୋଟେ Rice mill (ଚାଉଳ-କଳ) କେତେଗୁଡ଼େ ଲୋକ ଏଠି ଦାନା ପାଇଯାଆନ୍ତେ, କି ଗୋଟେ Paper mill, (କାଗଜ କଳ) ବାଉଁଶ ଆମ ଏଠୁ ଯାଇ କେତେ ଅଦେଶରେ କୋଟିପତି ହଉଚନ୍ତି, କାଗଜ ତଆର କର । ଅଉ ଆମେ,—ଆମ ହାଣ୍ଡି ନିତି ଉପବାସ କରେ । ଗଡ଼କଳ ଗୋଟେ ହେଲେ ଲୋକେ ପୋଷି ହୋଇ ଯାଆନ୍ତେ ନାଇଁ ? କରୁଚ କିଏ ? ଜ୍ଞାନ ଥିଲେ ପୁଞ୍ଜି ନାହିଁ, ପୁଞ୍ଜି ଥିଲେ ଜ୍ଞାନ ନାହିଁ । ଏଇ ତ ଆମ ଦେଶର ଅବସ୍ଥା !

ଉମ୍ପୀ—ମିଳିମିଶି ଯୌଥ କାରବାର, ଅର୍ଥାତ୍ Joint stock business—ଆମ ଓଡ଼ିଶାରେ ଅସମ୍ଭବ । ଯେତେ ଯାଗାରେ ଅନୁଷ୍ଠାନ ଗଢ଼ା ହୋଇଚି ସବୁ ପ୍ରାୟ ଫେଲ୍ !

ଅନନ୍ତ—ଆମେ ତ ମୁଠାଏ ଖାଉଚୁ ପିଉଚୁ, ମଉଜ ମଜଲିସ୍ କରୁଚୁ, ଥିଏଟର ବାଇସ୍କୋପ, ଗାଡ଼ି, ମଟର ସବୁ ଆମର ଅଛି । ଭାବୁଚ କି କେତେ ନିରନ୍ନ ପରିବାର ଏମିତ—(ପିଲାଟିକି ଠାରିଦେଇ) ଭାବରୁ ଠିକିଏ, ଯଦି କିଛି କରିହୁଏ ।

ଉମ୍ପୀ—ଭାବିବା ତ ପରେ । ଆଗେ ଏମାନଙ୍କୁ ନେଇ ଚାଲ୍ ଆମ ଠାକୁର ଘଣ୍ଟାକୁ । ଦେଖିବା, ବାପାଙ୍କୁ କହି ଯଦି ଗୋଟେ କିଛି କରିହେଇ ପାରେ ।

ଅନନ୍ତ—ଦେଖନ୍ତୁ, ତାହାଙ୍କୁ ବୁଝି କରିବା ଏକ ମୁସ୍କିଲ କାମ ହବନି

ଜମ୍ଦୀ—ତା ତ ଜାଣିଛି, ସିଏ ତ ଜମିଦାର—ଏଣେ ଶୁଣିଛି ଅମ୍ପଣାଙ୍କୁ

ଅନନ୍ତ—(ହସି) ତୁ ବି ତ ଫେର ହେବୁ ଦରଖ ?

ଜମ୍ଦୀ—ଚାଲ, ଚାଲ, ଟଙ୍କା ରଖ । ( ଭିକାରୀଙ୍କୁ ) ତୁମେମାନେ ସବୁ ଚାଲ । ଖାଇବାକୁ ଦିଆଯିବ ତମକୁ । କାମ କରିପାରିବ ତୁମେ ସବୁ ? (ଅଟେଇଲା) ।

ଭିକାରି—କି କାମ କରିବୁଁ ବାବୁ ! ବଳ କାଇଁ ?

ଅନନ୍ତ—ସବୁବେଳେ ତ ଖାଲି ହାଁ ହାଁ ହେଉଛନ୍ତି । ଦୁଅରେ ଶୁଣି ଖାଲି ଧୋଇ ମରୁଛି । ଦୁନିଆଁ ସାରା, ମହିଷ ହଉଛି—ଜାଣି ହୋଇଲି ବି କହୁଚନ୍ତି—ଭାତ, ଭାତ, ଭାତ, ( କହୁ କହୁ ଚାଲିଗଲେ ) ।

---

## ତୃତୀୟ ଦୃଶ୍ୟ

(ଜମିଦାର ମହେଶ୍ୱରବାବୁଙ୍କ ଘର । ଜମିଦାର କନ୍ୟା ବିଜୟା ଗାଉଥିଲା ଗୀତ—ଘରର ପଛପାଖ ଝରକାକୁ ଫିଟେଇ—ବାହାରର ଚନ୍ଦ୍ରାଲୋକିତ ଉଦ୍ୟାନକୁ ଚାହିଁ । ପଛରୁ ଆସିଲେ ଜମ୍ଦୀବାବୁ । ଟେବୁଲ ଉପରୁ ସମ୍ବାଦପତ୍ରଟି ଆଣି ବସି ପଢ଼ିଲେ । ବିଜୟାର ତାଙ୍କ ଆଡ଼କୁ ମୋଟେ ଲକ୍ଷ୍ୟ ନାହିଁ । )

—ଗୀତ—

ଫୁଟିଲା ଯେବେ ଫୁଲ, ପାଖୁଡ଼ା ଖୋଜ ସାକ୍ଷୀ
ମେଲିଲା ଯେବେ ଆଖି, ପବନ ଗଲା କହି ।
ଶଶୀ ଚାହିଁ, କଥା କହେ, ନୀଳର ଗଗନ କୋଣେ ଓଢ଼ଣା ଉଠାଇ,
ମନର କଥା, ମନରେ ମନେ, ଏକାକୀ ନୀରବ ମାଖି
ମଧୁବନରୁ, ଗନ୍ଧ-ଚୋର, ସଞ୍ଜ ଫୁଲ; ଚନ୍ଦ୍ର ସଖୀ

ଜୟୀ—(ଖବରକାଗଜ ପଢ଼ୁ ପଢ଼ୁ, ସେଠାର ଅନ୍ୟାନ୍ୟ କଥାକୁ କାନ ନ ଦେଇ ଜାଣୁ)

ବିଜୟା—( ଗୀତ ଶେଷକରି ଫେରି ଗୁହିଁଲା—ଜୟୀ ବସି କାଗଜ ପଢ଼ୁଛନ୍ତି, ଧୀରେ ଧୀରେ ଆସି ପଛଆଡ଼ରୁ ତାଙ୍କ ହାତରୁ ଖବରକାଗଜଟି ଝାମ୍ପିନେଲା । ଝାଣି ହସିଟା ଖୁବ୍ ଜୋର୍‌ରେ )

ଜୟୀ—( ଭାବନାରେ ଥିଲେ, ଖାଲି ପଛକୁ ହାତଟା ବଢ଼େଇଦେଇ )

ଉହୁଁ—ଦେ—

ବିଜୟା—(ଛଳେଇ) ଉ,ହୁଁ, ଦେ, ନଅଁଟା ବାଜିବାକୁ କେତେ ଅଛି ଜାଣ ? ଅନନ୍ତ ବାବୁଙ୍କ ଘରେ ଗପ ଜମିଥିଲା, ନାଁ ?

ଜୟୀ—ଉହୁଁ ଦେ—କାଗଜଟା ।

ବିଜୟା—ନଅଁଟା ବାଜିବ ଯେ—

ଜୟୀ—ଓଃ, ବାଜୁନା, ଦେ ।

ବିଜୟା—ନାଁ, ବାପାଙ୍କ ମୁଁ କହୁ ଯାଉଚି । ଗାଡ଼ି ଠିକ୍ ଅଛି । ଉଠ ଯିବା । କାଗଜ ପଢ଼ା ସେତିକି ଥାଉ । ତମର ଅନନ୍ତ ବାବୁ ଆସିଲେ ଗପ ଜମେଇବ, କାଗଜ ପଢ଼ିବ । At least ବର୍ତ୍ତମାନ ପାଇଁ କାଗଜଟାକୁ ଟିକିଏ ବିଶ୍ରାମ ଦିଅଯାଉ । ( କାଗଜ ଭାଙ୍ଗି ଟେବୁଲର ଗୋଟିଏ ବାକ୍‌ସ ତଳେ ରଖିଦେଲେ । )

ଜୟୀ—ଦେ, କାଗଜଟା ଅଧା ହୋଇଚି ଯାହେଁ ଟିକିଏ ।

ବିଜୟା—କଅଣ ପଢ଼ୁଥିଲ ଶୁଣେଁ । ଗୋଟିଏ କୋଉକାଳର ପୁରୁଣା କାଗଜ ।

ଜୟୀ—ପୁରୁଣା କାଗଜ ? ୨୭ ତାରିଖ ସେପ୍ଟେମ୍ବର ୧୯୨୭ ! ନିଜେ ଦେଖିଚି, ପୁରୁଣା ହେଲା ?

ବଜଯ୍ନା—ହେଲ ବା, କଅଣ ଅଛି ସେଥିରେ ? ଇମିତ କ Intersting ଖବରଟା ଅଛି, ଶୁଣେ ?

କଯ୍ନୀ—ଓଡ଼ିଶାରେ ଅନାହାରରେ ମୃତ୍ୟୁ । Food problem—ଘର, ଭାତ, ଘରର Question ।

ବଜଯ୍ନା—ସେକଥା ଯାହାର ଘରବାର ସେ ଭାବୁ, ତମର କାହିଁକି ମୁଣ୍ଡ ବଥାଉଛି ? ଏସବୁ ଅନନ୍ତ ବାବୁଙ୍କ ସାଜେ । B.A. ପାସ୍ କରିସାରି, କୋଉଠି ଆଜି ଭଦ୍ରଲୋକ ମହଲରେ ଜଣେ ହୋଇ ଗଣା ହେଉଥାନ୍ତେ, ନାଁ—ଗାଁଅଁକୁ ଆସି, ହଳ ଲଙ୍ଗଳ ! ତୁମେ ବି ତାଙ୍କ ସାଙ୍ଗେ ପଡ଼ି ଦେଖୁଚ—

କଯ୍ନୀ—ଛିଃ ! ଅନନ୍ତର ନିନ୍ଦା କରିବୁ ନାହିଁ ।

ବଜଯ୍ନା—ବରାବର କରିବି, ଯେତେଦିନ ସେ ଏଇ ଚଷାଭୂଷାଙ୍କ ସାଙ୍ଗ—ଏଇ ସଙ୍କୀର୍ତ୍ତନ—

କଯ୍ନୀ—ସଂକୀର୍ତ୍ତନ !

ବଜଯ୍ନା—ନୁହେଁ ? କି Nasty ସେମାନେ କହ ନାଁ ? ସେ ଲୋକ-ଗୁଡ଼ାଙ୍କ ଗନ୍ଧରେ ତ ମୋର ଯେମିତ Suffocation ହୁଏ ।

କଯ୍ନୀ—ଅନନ୍ତକୁ ତୁ ଚିହ୍ନିନାହିଁ, ଆଜି ସେ ଚଷାଭୂଷାଙ୍କୁ ନ—

ବଜଯ୍ନା—ମୁଁ ଦେଖୁଚି ତମର ମତଗତ ବିଗିଡ଼ି ଗଲଣି ଭାଇ ! ଉଠ, ଘରଭିତରେ Within these four walls ବସି ବସି, ମନେ ହେଉଚି ଯେମିତ ଗୋଟାଏ ବନ୍ଦୀ । ଚାଲ, Time ହେଲଣି, ଯିବା ।

କଯ୍ନୀ—କୋଉଠିକି ?

ବଜଯ୍ନା—ସିନେମା ।

କଯ୍ନୀ—ନାଁ ।

ବଜଯ୍ନା—କାହିଁକି ?

ଜସ୍ମୀ—ଲଭ ନାହିଁ କଣ୍ଟୁ । ଅମ ଦେଶର, ଅମ ସମାଜର, ଅମ ପ୍ରାଣର କଣ୍ଟୁ ମୁଁ ପାଏ ନାହିଁ ସେଥିରେ ବୋଲି, ଅଉ ରୁପ କଥାର ମୋହ ବି ମୋର ନାହିଁ ।

ବିଜୟା—ବେଶ୍, ଥିଏଟରକୁ ଚାଲ, ଲକ୍ଷ୍ମୀ ଥିଏଟର ନୂଆ ଅସିଚି । ଶୁଣିଲି ସାଜସଜ୍ଜା ଖୁବ୍ ଭଲ । ନାଚ ବଢ଼ିଆ ।

ଜସ୍ମୀ—ବିଜି ! ସାଜ ପୋଷାକ ବା ନାଚ ଦେଖିବାର ତୃଷ୍ଣା ବି ମୋର ନାହିଁ । ଅଉ ତା ଛଡ଼ା—

ବିଜୟା—ଥିଏଟରଟା ବି ଖରାପ ଲାଗିଲା ? Hopeless ! କି ପସନ୍ଦ ଯେ ତମର !

ଜସ୍ମୀ—ଥିଏଟରଟାକୁ ମୁଁ ନାପସନ୍ଦ କରୁନାହିଁ ବିଜି ! ଥିଏଟର ଦିଏ ଦେଶକୁ, ଜାତିକୁ, ଭାଷାକୁ ଜୀବନ । କିନ୍ତୁ ଏଇ ସାଜ ପୋଷାକ, ଏଇ ନାଚ ଦିଗଣ୍ଡ ନେଇ ନୁହେଁ, ଓଡ଼ିଆର ଜାତୀୟ ଜୀବନ ପାଇଁ ଆହୁରି ଦର୍କାର ।

ବିଜୟା—ତା ଅର୍ଥ ?

ଜସ୍ମୀ—ଅର୍ଥ—ଭାଷାରେ ମୌଳିକତା, ଭାବରେ ଉନ୍ମାଦନା, ତା ପରେ ଦେଶର ଚିନ୍ତା । ସମାଜର ଅବର୍ଜନା ଦୂର ହେବାର ବ୍ୟବସ୍ଥା, ଅଉ ନାଟକଟି ହୋଇଥିବ ଅମର ନିଜ ସମ୍ପତ୍ତି— ରଙ୍ଗମଞ୍ଚରେ ଏଇ ସବୁ ଦର୍କାର । ଅଉ ଖାଲି ନାଚ ପୋଷାକ, ଏଗୁଡ଼ା ହେଲା ଲୋକଙ୍କୁ ଭୁଲାଇବା କଥା ।

ବିଜୟା—ବାଃ, ତମର ଯେ ପରିକଳ୍ପନା !

ଜସ୍ମୀ—ବେଶ୍, ତୁଇ କହନା, ଖାଲି ନାଚ ବା ବେଶରୁ ଅମେ ପାଇଲେ କଅଣ ? ଦୁଇଖଣ୍ଡ ନାଚ, ପୋଷାକର ଚାକଚକ୍ୟ—ଏଇଟା ହେଲା ଭେଲିକି ଲଗେଇ ଲୋକର ଅଖି ଭୁଲେଇବା ଜିନିଷ । ସମାଜକୁ, ଦେଶକୁ, ଭାଷାକୁ ମିଳିଲା କଅଣ ? ପର ଦେଶର

ତ୍ୟାଗର [illegible]-ବ୍ରତ ଓ ଗୌରବ ଅବହେଳା ଆଜି ଆମର ଘରେ
ଭକ୍ତି କରିବା ଦରକାର ନାହିଁ କହୁ । ଆମ ଦେଶକୁ ଚାହିଁ,
ତା'ର ଅଭାବ କଅଣ ଦେଖ, ସେ ଗୃହେ କଅଣ ଗୁହଁ—
( ହଠାତ୍ ଘର ପଛବାଟେ ଆସିଲା ରମା । ହାତରେ ଗଡ଼ିଏ
କଂସା ଓ ଗଡ଼ିଏ ଥାଳି, କାନିରେ ବନ୍ଧା କେତୋଟି
ଦାପଠ ଡାଳି )

ବିଜୟା—( ଦେଖି, ଘୃଣା ଦୃଷ୍ଟିରେ ) କିଏ ?

ରମା—ମୋ ନାଁ ରମା । ଆପଣଙ୍କ ଜମିଦାରୀର ଜଣେ—

ବିଜୁ—ତା ବୋଲି ଏଠି କଅଣ ? କବାଟକୁ ଯା, ଗୋଡ଼ରେ ଗାଡ଼ିଏ
ପଙ୍କ କାଦୁଅ ନେଇ, ଘର ଭିତରକୁ ଆସି—

( ରମା ଚମକି ଉଠିଲା )

ଜୟୀ—ଛି, ବିଜୁ !

ବିଜୟା—ଦେଖ ନା ଭାଇ, କି ଅପରିଷ୍କାର । ଗୋଡ଼ଠା ଧୋଇ
ଘରେ ପଶିଥିଲେ ତ—

ଜୟୀ—( କଥାରେ ବାଧାଦେଇ ) କଅଣ କହୁଚ ତୁମେ ?

ରମା—ଗାଁ ଆମର ଏଠିକି ପାଖୋଇ ହବ, ହରିପୁର ।

ଜୟୀ—ଓ, ଅନନ୍ତବାବୁଙ୍କ ଗ୍ରାମଘର ପାଖେ ?

ରମା—ହଁ ।

ବିଜୁ—ବେଶ୍, ଏ ସ୍ୱଚ୍ଛ ଅଂଧରେ ଏଠି ଘର ଭିତରେ କଅଣ କାମ ?

ରମା—ଖଜଣା ଦେଇ ପାରି ନ ଥିଲି । ପାଚିଲି କାଂସା । ୪,୫ ଦିନ
ତଳେ ଥିଲେ ଦେଇ ଥାଆନ୍ତି । କଥାରେ ହୁଏତୋ ଗୋଟା
ବାପାଙ୍କୁ ମୋର ଧରି ଆଣିଚନ୍ତି କଚେରୀକୁ । ଘରେ ଆମର ତ
କିଛି ନାହିଁ । କଥାର କରି ଗୁଡ଼ାକ ଧରୁଛି ଆଣି ଭାତ
ରାନ୍ଧିଥିଲି ଯେ ମୁଁ ବାପାଙ୍କୁ ନେଇ ଯାଇଥିଲି । ବାପା ମୋର

ଖାଇ ବସିବାକୁ ଯାଉଥିଲା, ଗୁଣ୍ଡି ଏ ଧକ୍କା—ଦାମୀ ଡିସପଦା
ତଳେ ପଡ଼ି ଗଲା । ( ବାନ୍ଧ ପକାଇଲା କନ୍ଦୁ କନ୍ଦୁ )
ବିଜୟା—ଖାଇଣା ନ ଦେଇ ଏତେ ଦାନ ଉଣିଲ କାହିଁକି ?
ଜ୍ୟୋ—( ବାଧାଦେଇ) ହଁ, ତା ପରେ କ'ଣ ହେଲା ?
ରମା—ଦାନ ଦାନ ହେଲା ବାପା କହୁଛି ଖାଇ ନାହିଁ । ଅନ୍ଧାର ରଖିଛନ୍ତି
ତାକୁ । ଆମେ ସବୁ ଉପାସ । ଘରେ ଏଇ କଂସା ଖଣ୍ଡିକ, ଥାଳି
ପଡ଼ିକ ଥିଲା, ଆଜି ରୋଜ ହାତର ଏଇ ତାଡ଼ ଦାଗ ।
ଜ୍ୟୋ—ରଖ ରଖ ତାକୁ । ବିଜୁ, ମୁଁ ଠିକଏ ଆସୁଛି । ଆସନ୍ତ ମୋ
ସଙ୍ଗରେ ତୁମେ ।
ବିଜୁ—( ଠିଆହୋଇ ଜ୍ୟୋ ଓ ରମାକୁ ଗୁହୁଁଥାଏ )
ଜ୍ୟୋ—ଧର ତମର ବାସନ, ଆସ ।
ବିଜୁ—ମୁଁ ଗାଡ଼ି ଟିକ୍ ରଖିଛି, ତୁମେ ବେଗେ ଆସ ଭାଇ ।
ରମା—( ବାସନ ଇତ୍ୟାଦି ଧରି ଗୁଲିଗଲା ଜ୍ୟୋ ପଛେ ପଛେ )
ବିଜୟା—( ନାକରେ ରୁମାଲ୍ ଦେଇ ) ଉଃ, କି Nasty !

---

## ଚତୁର୍ଥ ଦୃଶ୍ୟ

( ମାଣ୍ଟଅନ୍ଧାର ହୋଇଛି, ଜମିଦାରଙ୍କ ପ୍ରଦାର ମେଳ୍ପ ଅଗର
ରାସ୍ତାରେ ଜଣେ ଭିଖାରୀ ଗାଇ ଗାଇ ଯାଉଛି )

—ଗୀତ—

ରବ ତୁଳିଲା ଅସି କାନ୍ତି ତଳୀକ
ହସ କାନ୍ଦକୁ ଦେଇ ଚଗଲି । ୦ ।
ଖାଳିବାକୁ ନାହିଁ କାହା ଘରେ ସଞ୍ଜ ସଳିତା
ଖାଇବାକୁ କିନ୍ତୁ ନାହିଁ କ୍ଷୁଦ ପେଜ ପଳିତା

ଜୁଅଁହ ଛାହା ତଳେ ଅଖିରୁ ଲୁହ ଝରେ
ଜୁଅ ମୁହଁରୁ ଛାଟି ମା'ଆ ତା ପେଟେ ଟାଳେ
ହସି କେ ପ୍ରକୃତି ଦଅଲିକ ॥
ଫାଟେ ପୀତାମ୍ବର କଏ ତିନ୍ତୁ ଅସୁମାର
ଗହ୍ଁଠା କବଟା ଖଡ଼ି ପେଣ୍ଡ ଲଗା ତାହାର
ମୁଣ୍ଡ ଟାଳ ତୁଣ୍ଡରେ ମାହ କେ ଦନ ସାରେ
ଗଡ଼େ ଜଣେ କେ ବସି କଏସେ ଘର ତଳେ
ତୁନଅଁରେ ଲଗିଚ ଭେଲକି ॥
( ରମାକୁ ସାଙ୍ଗରେ ନେଇ ଅସିଚ ଜପ୍ସୀ )

ଜପ୍ସୀ—ଠିକଏ ଏଇଠି ଥାଅ । ମୁଁ ସାଙ୍ଗେ ସାଙ୍ଗେ ଅସୁଚି ।
( ରମା ସେଠି ଠିଅହୋଇ ରହୁଛି କାଠ ପିତୁଳାପରି । ଅଳ୍ପ କାଳ ପରେ ଅସିଚି ଦାମା ପ୍ରିଅଦା—ରମାକୁ ଦେଖି ଖୁବ୍ ଅନନ୍ଦ ହୋଇଚି )

ଦାମା—ରମା! ଅରେ ? ରାତି ଅନ୍ଧାରଟାରେ କେତେବେଳୁ ଅସି ଏଠି ଠିଅ ହୋଇଚୁ—ଅଜି ତାଂକୁ ନଈଁ ଠିକଏ ? ଛି, ଛି, ତୁ କଅଣ ମନେ କଲୁ, ସେଦିନ ମତେ ଦାଇପଦ ଗାଳି ଦେଲୁ ବୋଲି, ମୋ ମନ ଭାଙ୍ଗିଗଲା ?

ରମା—( ବରକ୍ତ ହୋଇ ) ଦାମା !

ଦାମା—( ଚୁହଅଡ଼କୁ ଚୁହଁ ) ଏ ଅନ୍ଧାରରେ କାଏ କୋଉଠି ଅଛି ଯେ, ତୁ ଫେର ଏମିତି ସେଇଦନା ପରି—( ପାଖକୁ ଅସିଲା )

ରମା—ଦାମା ! ଛାଡ଼ିଅ କହୁଚି । ଭଲ ହବ ନାହିଁ, ଡାକିବି ଏଇନେ ?

ଦାମା—ମୁଁ ତୋ ଭଲକୁ କହୁଚି ରମା, ପାଞ୍ଚମାଣ ଜମି ମୋର ।
ତା' ପରେ ଦେଖୁଚୁ ତ ଜମିଦାର ଘର ଚାଜବ । କଅଣ
ଖାଇବା, ନାଁ ପିଇବା, ନା ହାକିମି—କୋଉଥିରେ ଊଣା ?
ବାପାକୁ ତୋର ଅଜା ଖାଇଲା ଜଂଘାକୁ ଜଠେଇ ଜେମିତ
ପଗଡ଼ି ଅଣିଲି ! ରମା ! ତୁ ଯେବେ ଟିକିଏ କହିବୁ ତ
ଏଇନେ ତୋ ବାପାକୁ ମୁକୁଳେଇ ଆଣିଦେବି । କଅଣ କହୁଚୁ
ରମା—ମୋ ବାପାକୁ ମୁଁ ମୁକୁଳେଇ ନେବି । ତୋତେ କହୁନେଇଁ ।
ତୁ ଯିବୁ କି, ପାଟିକରି ଡାକିବି ଏଇନେ—
ଦାମା—ଅଚ୍ଛା, ଅଚ୍ଛା, ଦେଖୁଚି ରହ ତୋ ଦମାକ୍ ! ବାପ ଅରଜୁଚି
ବୋଲି ତ ! ହାତଟେ କି ଗୋଡ଼ଟେ ଯେବେ ନ ଭାଙ୍ଗି ଛାଡ଼ିଚି
ମୁଁ ତୋ ବାପର—ଫେର୍ ମୋ ନାଆଁ ଦାମା ରାଉତ ନୁହେଁ ।
ଜାଣିଚୁ କି ତମାତେ ( ଚାଲି ଯାଉଥିଲା )
ରମା—( ଡାକି ଉଠି ) ଦାମା !

( ଆସି ପହଞ୍ଚିଗଲେ ଜଯ୍ଯୀ )

ଜଯ୍ଯୀ—ଦାମା ! କଅଣ ?
ଦାମା—(ସ୍ୱର ବଦ୍ଳାଇ)—ହାରାମ୍ଜାଦ ଟୋକା !
ଜଯ୍ଯୀ—(କଥାରେ ବାଧା ଦେଇ) ଏଇ ଦାମା !
ଦାମା—ହଜୁର ! ଏ ଗୋଟେ ଛତରଖାଇ ଟୋକା ଆସି, ଏଠି
ମୋତେ ଯାହା ନ ଆସେ ମୁହଁକୁ ଗାଳି ଦେଇ—
ଜଯ୍ଯୀ—ତୋତେ ଗାଳି ଦେଲା ?
ଦାମା—ତା ବାପଠିଁ ଖଜଣା ବାକି । ଧରି ଅଣିଚି ବୋଲି ମୋର
ସାତପୁରୁଷ ଉଦ୍ଧାରୁଚି । ମାଇକିନିଅଁ ଠା ଘୁର ! ବୋପାଠି
ଏତେ ସୁଅଗ ଯେବେ ସରକାରି ଖଜଣା ଗଣିଦେଲ
ବୋପାକୁ ମୁକୁଳେଇ ନେ । ଅରେ ! ଚାଲି ନାଇଁ ମୋତେ

କଏ ବୋଲି, ଦାମାଠି ମୁଁ । ଗରଭିଣୀ ଗାଈ ବାଟେ ଛାଡ଼ିବ
ମୋ ନାଆଁ ଶୁଣିଲେ । ଅଉ ତୁ ତ ଛାର—

ଜୟୀ—ଅଚ୍ଛା ତୁ ଯା, ମୁଁ ବୁଝୁଚି ।

ଦାମା—( ଉଙ୍କି ଚାହିଁ ଚାହିଁ ସେଠୁ ଚାଲିଗଲା—ଅନ୍ତରାଳରେ ରହି
ସବୁ ଦେଖୁଥାଏ )

ଜୟୀ—ରମା ! ପ୍ଲେଟଲେଲ ସେଗୁଡ଼ା ( ଟଙ୍କା ପଟେଦେଠୁ କାଢ଼ି )
କେତେ ଟଙ୍କା ଗଣ୍ଡା ବାକି ?

ରମା—(ମୁଣ୍ଡପୋତି) ମୁଁ ଜାଣେ ନାହିଁ ।

ଜୟୀ—ଏଇ କୋଡ଼ିଏ ଟଙ୍କା ନିଅ । ଗୁମାସ୍ତା ପାଖକୁ କଚେରିକି ଯା ।
ଯାହା ଟଙ୍କା ହବ ଦେଇ, ବାପାକୁ ନେଇ ଘରକୁ ଯା ।
ବଳିଲେ ବାକି ଟଙ୍କା ଘରେ ଖରଚ କରିବ ।

ରମା—( ଟଙ୍କା ନ ନେଇ) ସାନବାବୁ । ଟଙ୍କା ? ଏ ଟଙ୍କା, ଟଙ୍କା ମୁଁ
କଅଣ କରିବି ?

ଜୟୀ—( ହାତରେ ଟଙ୍କା ଦେଇ ) ଛି, ଛି, କାନ୍ଦନା, ନେଇ ଯା,
ଟଙ୍କା ନ ଦେଲେ ବାପାକୁ ଛାଡ଼ିବେ କେମିତି ?

ରମା—(କରୁଣ ଦୃଷ୍ଟିଦେଇ) ଏ ଟଙ୍କା ଫେର କୋଉଠୁ ସୁଝିବୁ ବାବୁ ?

ଜୟୀ—ତୁମେ ନିଅ ତ, ଏଇଟା ତ ଆଉ ମହାଜନୀ ଟଙ୍କା ନୁହେଁ !

ରମା—ସାନବାବୁ ! ଧାନ କଟା ହେଲେ ତେବେ—

ଜୟୀ—ଅଚ୍ଛା, ଅଚ୍ଛା, ତୁମେ ଯା ନା ଆଗେ—ବାପାକୁ ନେଇ
ଘରକୁ ( ଚାଲିଗଲେ )

ଦାମା—( ଅନ୍ତରାଳରୁ ବାହାରକୁ ଆସି ) ଟଙ୍କା ମିଳିଗଲା ରମା,
ନା ?

ରମା—( ଚାଲିଗଲା ନ ଚାହିଁ ଦାମାକୁ ) ହୁଁ

ଦାମା—ହୁଁ ? ଅଚ୍ଛା ! (ଚାହିଁ ଚାହିଁ ଅନ୍ୟ ଦିଗକୁ ଗଲା)

# ତୃତୀୟ ଦୃଶ୍ୟ

( ଜମିଦାରଙ୍କ ଘର । ଜମିଦାର ଭିତରୁ ଡାକି ଡାକି ଆସିଲେ )

ଜମି—ବିଜି !

ବିଜୟ—( ଅତି ଦୂରରୁ ) ଆଜ୍ଞା !

ଜମି—କି ହେ ! ତମେ ସବୁ ଦେଖୁନାହଁ କି ?

ବିଜୟ—ଭଲ ତ —

ଜମି—ଘଣ୍ଟା କେଣେ କୁଆଡ଼େ ବୁଲି ଯାଉଛି ? ସେତେବେଳ ଯାଏ ଆସି ନାହିଁ ?

ବିଜୟ—ନାହିଁ ହେ ( ହିସାବ ଅଙ୍କି ) ଗୋଟାଏ ( କଅଁ ବହୁତ )

ଜମି—କଅଣ ଗୋଟାଏ ?

ବିଜୟ—(ମନର କଥା ଗୋପନ ରଖିବାକୁ ହସିଦେଇ) ନାହିଁ ବାପା ଗୋଟାଏ କୋଉଁଠିକି ଯିବାକୁ ହବ—ଠିକ୍ କରିପାରୁ ନାହିଁ ।

ଜମି—ଏ ସବୁ ତମର ଚିଲିମ ବ୍ୟବସ୍ଥା । ଏଇତ ଆଜି ନଅଟା ବାଜିଲା Punctuality ଗୋଟାଏ କଥା—ତମେମାନେ ଆଜି ଶିଖିଲ ନାହିଁ କି । ଜୀବନରେ ଉନ୍ନତି କରିପାରିବ ନାହିଁ ।

ବିଜି—କାହିଁକି ?

ଜମି—ସିନେମା ଦେଖିଲ ବା ଥିଏଟର ଦେଖ, ଏଠି Start ହୁଏ ଠିକ ନଅଟାବେଳେ । ଯିବାକୁ କହୁଥିଲ, ଯଦି ଯିବାର ହୁଏ before time ହେଉଥିବା ଉଚିତ ।

ବିଜି—ମୁଁ କଅଣ କରିବି—ଭୁଲ ଅସିଲେ ହିନା ?

ଜମି—ତମ ଯିବା କଥା ସେ ଜାଣେ ତ ?

ବିଜି—ହଁ, ମୁଁ ତାଙ୍କୁ କହିଛି ।

ଜମି—ତେବେ ଆଜି ଗଲ କୁଆଡ଼େ ? ଏତେ ଡିଲ୍‌ଟାଏ ହେଲଣି, କୌଣସି ବସ୍ତୁରେ ଗୋଟାଏ ସମ୍ପୂର୍ଣ୍ଣ ହେଲ ନାହିଁ !

ବିଜୟ—ନାଁ, ବାପା ସେ ବୋଧହୁଏ—ହିଁ ହିଁ ଅନନ୍ତ ବାବୁଙ୍କ ଘରେ ଥିବେ । ସେଠି ଯଦି ବସିଗଲେ—

ଜମି—ଆରେ ବାବୁ ! ବସ, ମନା ନାହିଁ । ଅନନ୍ତ ଖରାପ ଡିଲ୍ ନୁହେଁ—ମୁଁ ଜାଣେ । ତା ବୋଲି—ଅଚ୍ଛା ତୁ ପ୍ରସ୍ତୁତ ହୋଇଯା—ତାଙ୍କୁ ମୁଁ ଅନନ୍ତ ଘରୁ ଡକାଇ ପଠଉଚି । (ଯାଉଁ ଯାଉଁ) ହିଁ, କୋଉଠିକି ଯିବ ମନେ କରୁଚ ?

ବିଜୁ—ଭାଇଙ୍କର ଇଚ୍ଛା ନୁହେଁ ସିନେମା ଯିବା । ଆଜି ଥିଏଟର କଥା—

ଜମି—ବେଶ୍, ଥିଏଟରକୁ ଯା । କିନ୍ତୁ ସମୟ ମନ ବଦଳେଇ ଆସିଲେ ହେଲା ।

ବିଜ—କାହିଁ ବାପା ! ଅଯଥା ଟଙ୍କା ଖର୍ଚ୍ଚକରି ଥିଏଟର ଦେଖି ଲାଭ କଅଣ ?

ଜମି—(ଫେରିଆସି ବିଜୁର ମୁଣ୍ଡ ଆଉଁସି, ହସି) ନାଃ, ତୋର ଫେର ଏଇ ବୁଦ୍ଧି କେବେ ହେଲା ମାଆ ?

ବିଜୟ—ନାହିଁ ବାପା ! ମୁଁ କଅଣ କହୁଥିଲି କି—ଥିଏଟରଟା ଖରାପ ଜିନିଷ ନୁହେଁ;—ଯଦି ସେଥିରେ ଆମ ଦେଶର Idea ଅଛି ଭାଷା, ଭାବ ଆମ Domestic life ର ଗୋଟାଏ ସୁନ୍ଦର ଛବି ନଥାଇ ବିଦେଶୀ ଭାବ ଭଙ୍ଗୀ—ଏ ସବୁକୁ encourage (ଏନ୍‌କରେଜ) କରିବାଟା—

ଜମି—(ହସି) ମୋତେ ଠିକ୍ ନୁହେଁ । କିନ୍ତୁ ତୋର ଏସବୁ ଜ୍ଞାନ—

ବିଜ—ଏଇ ତ, ଠିକ୍ ସଞ୍ଜବେଳେ ଭାଇଙ୍କ ସାଙ୍ଗରେ ସେଇକଥା ।

ଜମି—ସଞ୍ଜବେଳେ ? ଜମ୍ମୀ କଣ ତା' ହେଲେ ଘରୁ ସଞ୍ଜପରେ—

ବଜ—(ଚମକି ଉଠି, ଜିଭ କାମୁଡ଼ି) ନାହିଁ ବାପା ! ଆଜି ନୁହେଁ—
କାଲି ସଞ୍ଜବେଳେ ଭାଇଙ୍କ ସଙ୍ଗେ—

ଜମି—ଓଃ, ତାହା ହେଲେ ମୁଁ ଅନନ୍ତ ଘରକୁ ଲୋକ ପଠଉଚି ।
ସେ ସେଇଠେଇଁ ଥିବ । (ଚାଲିଗଲେ)

ବଜ—ଓହୋ, ଧରା ତ ପଡ଼ି ଯାଇଥିଲି ( ମୁଣ୍ଡରେ ହାତଦେଇ
ଚଉକୀରେ ବସି ହସିଲା)

ଜୟୀ—(ପ୍ରବେଶ କରି) ବଜ !

ବଜ—(ହଠାତ୍ ଚଉକୀରୁ ଉଠି ଜୟୀର ମୁହଁରେ ହାତ ଦେଇ ଚୁପ
ହେବାକୁ ନିର୍ଦ୍ଦେଶ କରି ହସି ଅନ୍ୟ ଘରକୁ ନେଇଗଲା)

ଜୟୀ—(କିଛି ବୁଝି ନ ପାରି ଯାଉଁ ଯାଉଁ ପଚାରିଲା) ମାନେ ?

ବଜ—(ବାପାଙ୍କ ଯିବାକୁ ଉଣ୍ଡି) ଅଧ କହୁଚି—
(ହସି ହସି ଭାଇକୁ ଠେଲିନେଲା)

---

## ଷଷ୍ଠ ଦୃଶ୍ୟ

### ଦୃଶ୍ୟାସ୍ତ

(ଗାଁ ମୁଣ୍ଡର ଧାନଖଳା, ରମା କୁଲାରେ ଧାନ ଉଡ଼ାଉଥିଲା ଆନନ୍ଦରେ ଗୀତଗାଇ । ପାଖରେ ଗୋଟିଏ ଟୋକେଇରେ ରଖାହୋଇଚି ବୋଝେ ଧାନ । ଗୀତ ପଦେ ପଦେ ଧରୁଚି, ଧାନ ଉଡ଼ାଉଚି)

—ଗୀତ—

ମାଟି ପେଟ ଫାଟି ମାଆ ଦେଖା ଦେଲା
ମୁଣ୍ଡେ ଧାନ ଢେର ଢେର
ମାଆକୁ ଖୋଜୁଛୁ ବାଟୋଇ ବାହୁଙ୍କ
ଅନା ଥରେ ଫେର ଫେର ରେ

ଦେଇ ବୁକୁ ବିଦାରି
ମାଅ ରଖିଛନ୍ତି ଖଣ୍ଡକ୍ଷୀର ରେ ।
ଅଣଦେଖିଲା କଲେ ମାଅଙ୍କୁ, ଭାଙ୍ଗିବ
ବାଟବଧା ଘର ଖଣ୍ଡି
ଆଗପଛ ସାହା କେହୁ ନ ହୋଇବେ
ମରବୁ ସିନା ଦରାଣ୍ଡି ରେ
ଦେବେ ଭଗାଗ୍ରି ଭଣ୍ଡି
ଫାଟିଯିବ ତୋ ପୂରନ୍ତା ହାଣ୍ଡି ରେ ।

(ଗୀତ ମଝିରେ ଅସିଲା ରମାର ବାପା ରଘୁଦାସ ଗୋଟିଏ ଖାଲି ବୋଝ ନେଇ)

ରଘୁ—ହେ ଝିଅ ବୋଝଟା । ଧାନ ପୂରେଇଛୁ ?

ରମା—ହଁ, ସାନବାବୁଙ୍କ ଠଙ୍କାକୁ ଧାନ ଅଲଗା ଗଦେଇଚ ଟି ?

ରଘୁ—ହଁଲେ ଝିଅ, ସେତ ଦାଆଙ୍କ ଅମୁଣିଆ । ପେଟ ମରବ ପଛେ ସେ ଧନରେ ଫେର ହାତ ଦବ କିଏ ? ଏ ବୋଝଟା ନେଇ ଯାଉଚି, ଅଜ ତ ଥଉଟେ ହେବ । ତୁ ଡଢ଼େଇଙ୍କର ବୋଝରେ ଢାଳି ଦେ ।

(ଖାଲି ବୋଝଟା ରଖିଦେଲା । ପୂରା ବୋଝଟାକୁ ବାପ ଝିଅ ଦହେଁ ଧରି ଉଠାଇ ରମା ବାପ ମୁଣ୍ଡକୁ ଦେଲା) ଝଟ ଝଟ ସାରପଡ଼ା । ବେଳ ରଡ ରଡ ହୋଇ ଆସିଲାଣି । (ରଘୁ କନ୍ଧ ଯାଉଥାଏ, ରମା ପୁଣି ପଦେ ଗୀତ ଧରି କାମରେ ଲାଗିଲା )

ଦାମ—(ଧୀରେ ଧୀରେ ଆସି ଗଛମୂଳେ ଠିଆ ହୋଇ ଡାକିଲା) ରମା !

ରମା—କିଏ ? (ଚମକି ପଛକୁ ଚାହିଁଲା)

ଦାମା—(ହସି) ମୁଁ, ମୁଁ ଆସିଛି। ଯାହା କହୁଥିଲି—
ରମା—ଦାମା, ଫେର ତୋର ସେଇ—
ଦାମା—ଅଛି, ତୁ ଠିକଣ ଭାବ, ମୋତେ ତୁ ନାପସନ୍ଦ କାହିଁକି କରୁଛୁ, ମୁଁ ତ ରୂପ ଗୁଣ ଧନ ସବୁଥିରେ—(କହୁ ପାଖକୁ ଆସିଲା)
ରମା—ପୋଡ଼ାମୁହାଁ ! ପାଖକୁ ଆସୁଛୁକି ଫେର—( ଉଠି ଦୂରଇଗଲା)
ଦାମା—ଅଲୋ, ମିଛରେ କାହିଁକି ତୁ ଭଲ—( ପାଖକୁ ଆସି ) ରମା, ତୁ ମତେ ପାଗଳ କରି ଦେଲୁଣି ଲୋ ! ମେ ର ଆଉ ତୋ ଛଡା—
ରମା—(ରାଗି, ଝାଡୁ ଉଠାଇ) ଯିବୁ ନାଁ ଫେର ?—
ଦାମା—(ଫେର ଯାଉଁ ଯାଉଁ) ବାକ ରମା ! ଉତଲିଣ ହଉଛୁ କାହା ପାଖେ ? ଆଖିରେ ସେଦିନ ଯାହା ଦେଖିଛି ଜାଣୁନ ? ହଉ, ହଉ,(ଚାଲି ଯାଉଁ ଯାଉଁ) ବହୁତ ପାଇ ଯାଉଛୁ, ନାଇଁ ? ମୁଁ ଖାତରକି ଆସିଲି ନାହିଁ । ଅଚ୍ଛା !(ଚାଲିଗଲା ରାଗରେ)
(ଠିକ୍ ସେତିକି ବେଳକୁ ପନ୍ଦରଟି ପୁଅ ଝିଅ ଗୋଟାଏ କୁଆ ଖଡ଼ଖଡ଼ି ବାନ୍ଧେଇ ଖେଳ ତୋଳକଟିଏ ବଜେଇ ନାଚେଇଲେ ଆସୁଛନ୍ତି । ରମା ଚାହିଁଲା ତାଙ୍କ ସବୁ, ଗୀତ ହାତ ସବୁ ତାର ବନ୍ଦ) ।
କନକ—ରଖରେ ବେହେଇ ପୁଏ ! ଝିଅଟା ମୋର ଘରୁ ଯିବ ଶାଶୁଘର, ନାମାଘର ଭାତ ଖାଇବ ନାଇଁ ? ନାମାକୁ ଭେଟିଗି ହେବ ନାଇଁ, ଏ କେମିତି କଥା ମ ? ରଖ ରଖ ।
ରମା—କଲେ କନକ, ସେ ଫେର କୋଉ ଝିଅ ଲୋ ତୋର ?
କନକ— ସାନ ମହିଅଁ ଲୋ ନାମା ! ସରଧା, ସରଧା, ଆଜି ତା ବର ଆସିଛି ତାକୁ ନବାକୁ ଯେ, ଫେରେତ ସାଇ ...

ଅଛନ୍ତି । ସବୁଆଡ଼ ଟିକେ ବୁଲେଇ ଦେଖେଇ ଦେଉଥାଏଁ । ଫେରେ ଯାଇ କେବକୁ ଆସିବ ସିନା ? ତେଣେ କୁଣିଆଁ ଚର୍ଚ୍ଚା ହେବେ ଯେ ଡର କଅଣ ଅଛି ମୋର ? ରନ୍ଧାବଢ଼ା କିଛି ବୋଇଲେ କିଛି ହବାକୁ ନାହିଁ । ଦେ, ତୁ ଅଇଲୁ ଝିଅକୁ ଟିକିଏ ସଙ୍ଗୋଳି ଯା । ଆଉ କଅଣ ଦବାର ମୁହଁ ଚୁହାଁ ଦେ !

ଆ—ଆ—

ରମା—(ହସି ହସି) ଓଁ ହୋ କି ଘରକରଣାଟେ କରିଛୁ ଲୋ !

କନକ—ମଲ ଗୁଆ ଡେଇ ଗୁରିକ ! ମୁଁ କଅଣ ତମରମାନଙ୍କ ପରି ଅଘରି ହେଇଛି କଲୋ ? କଅଣ କରିବ ଲୋ ନାନୀ, ଏଇତେତେ କଅଣ ବୋଟ୍ ସଇଲ ? କାଲିକି କାଲି ନାଣ୍ଡାଟିର ବାହାଘର । ଆ, ତୁ ଅଇଲୁ, ଝିଅକୁ ଦେଖ ।

ରମା—(ଅଟି, ଖଣ୍ଡଣିରୁ ଝିଅକୁ କାଢ଼ିଲା) ମଲ, ହଇତ—କେତେ ଗହଣାଗଣ୍ଠି ଝିଅକୁ ଦେଇଛୁ ଏ କାଲ ମହରଗରେ !

କନକ—ଅଲୋ ଝିଅ—ଢିଅ, ରହିଲେ ଗନ୍ଧାଏ । କାଲ ମହରଗ ବୋଲି ବୋଟ୍ କଅଣ ରହିବ ? ଅଲୋ ବହୁତେ—ହାତ, କାନ, ମୁଣ୍ଡ, ସବୁଥିକି ସବୁ ସଜ ଦେଇଚ । ଦେ, ତୁ କଅଣ ଦବୁ—ଦେଲୁ ? ମୁଢ଼ି ଜଟୁଡ଼ା ହାଣ୍ଡିଟେ ନ ଦେଲେଟ ହବ ନାହିଁ, ଛିଟ କପାଟେ ଟଣ୍ଡିଏତ ହବ । କୋଉ କଥା ନ ହେଲେ ଚଳୁଚି ?

ରମା—ହଉ, ହଉ (ଧାନ ଅଣି) ଆମର ତ ଗରିବ ଘର ଲୋ କନକ, ଏଇ ଧାନତକ ନେ, ଝିଅ ସାଙ୍ଗେ ସଙ୍ଗୋଳାରେ ଦବୁ !

କନକ—ହଉ, (ଧାନତକ କାନିରେ ବାନ୍ଧିଲା) ଭଠାରେ ହେବେହିଁ ଯୁଅ ! ଖଡ଼ଗଡ଼ ଭଠା ! ଯାଉଚି ଲୋ ନାନୀ ! ତର କଅଣ

ଅସ୍ତ—ଘଡ଼ଏ, ପହଡେ଼ ବସି ତୋ ପାଖେ ଦୁଃଖ ସୁଖ ହବାକୁ ? ଟିଅ ବୋଝ ପର ! ଜାଣୁନୁ ?

ରମା—(ହସି) ହଁ, ଗୋଟେ ଘର କରଣା ମାଡ଼ପିଟେ ତୁ ! ମୁଁ ଜାଣେ ନାଇଁ ଅଜ କଅଣ ?

କନକ—ସେଇଆ ପର ! ବର ପିଲଟି ଅସି ଗାଅଁ ମୁଣ୍ଡେ ହବନ୍ତି । (ପିଲମାନେ ଚୁଲଗଲେ, ରମା ଲଗେଲା ତା କାମରେ ସିମିତ ଗୀତ ଗାଇ ଗାଇ । ପିଲ ଗହଳ ଭିତରେ ଅସିଚ୍ଛ ସାଇକଲରେ ଜର୍ଯ୍ଯୀ । ଚୁପ୍‌କର ସାଇକେଲ ଘୁଡ଼ ଗଛମୂଳେ ଛୁଡ଼ା ହେଇ— ଏସବୁ ଦେଖୁଥିଲ ହସି ହସି । ରମା ପେଟନ୍ତେ କାମରେ ଲଗିଲ—ଜର୍ଯ୍ଯୀ ପଛରୁ ଡାକଲ ।)

ଜର୍ଯ୍ଯୀ—ରମା ! (ଡାକ ଗଛମୂଳେ ମୁହଁ ଲୁଚେଇ ଦେଲ)

ରମା—(ଚମକ) ପୋଡ଼ାମୁହାଁ ଫେର ଅସିଚ୍ଛୁ ? ( ଝାଡ଼ୁ ଉଠାଇ, ମାଇଲ ଗଛ ଆଡ଼କୁ ଲକ୍ଷ କର, ସେଇଟା ବାଜିଲ ଜର୍ଯ୍ଯୀ ମୁଣ୍ଡରେ । ସାଇକଲଟା ପଡ଼ିଗଲ ହାତରୁ ଘୁଡ଼ ) ।

ଜର୍ଯ୍ଯୀ—ଓଃ (ମୁଣ୍ଡରେ ହାତ ଦେଲ) ।

ରମା—କଏ ? (ଦୌଡ଼ ଅସି ଦେଖେ ଜର୍ଯ୍ଯୀ—ଚମକ ଉଠିଲ— ଜର୍ଯ୍ଯୀ ମୁଣ୍ଡରୁ ରକ୍ତ ବୋହୁଚ୍ଛି—ରମା କାନିଟା ବଢ଼ାଉଥିଲ ପୋଛିବାକୁ—ସାହସ ହେଲ ନାହିଁ ବୋଧହୁଏ, ଭଅଙ୍କ କରବ ଠିକ୍ କର ପାରିଲ ନାହିଁ, ଜର୍ଯ୍ଯୀ ରକ୍ତ ପୋଛି ହସି, ଚୁହିଁଲ ରମାକୁ ।) ଥାଉ, ସେ କିଛି ହେଇନି (ରମାର ହାତକୁ ଧରିଲ)

---

ବନ୍ଧୁମୁକ୍ତ

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

(ଜମିଦାର କକ୍ଷ—ଜମିଦାର ଓ ଦାମା । ଜମିଦାର ଶ୍ୟାମା-ଚରଣ ଦାମାକୁ ସକୋରେ ଗୋଟିଏ ଚାପଡ଼ ମାରି କହିଲେ)

ଜମି—ବଦମାସ—

ଦାମା—ହିଁ, ଅଜ୍ଞା ମୁଁ—

ଜମି—ଫେର ? ଯା—ବାହାର ଅଖି ଅଗରୁ ମୋର । ସାମ୍ନାସାମ୍ନି ତୋର କାମ ନୁହେଁ ଏ କଥା କହିବାକୁ ! ଜାଣୁ, ତୁ କାହା ଆଗେ କଣ କହୁଛୁ ?

ଦାମା—ଅଜ୍ଞା, ମୁଁ ଯାହା ଅଖିରେ—

ଜମି—ଅଖିରେ, ଦେଖେଇ ପାରିବୁ ? ତା ନ ହେଲେ—

ଦାମା—ଅଉ କୋଉଦିନ ଫେର ସେ—

ଜମି—ଖବରଦାର୍, ଫେର କହୁଛୁ ଦାମା ! ଯା ! ବାହାର ମୋ ଅଖି ଅଗରୁ ଅଗେ । ଯା—(ଅଙ୍ଗୁଳିରେ ବାହାରକୁ ଯିବାକୁ ନିର୍ଦ୍ଦେଶ ଦେଲେ ଓ ଦାମା ସଭୟେ ଚାଲିଗଲା । ଜମିଦାର ଶ୍ୟାମ ଚରଣ କିଛି ବେଳ ତା ଯିବା ବାଟକୁ ଚାହିଁ ରହି ପଦଚାରଣ କଲେ ଘରଠାଯାକରେ ) ସାନବାବୁର ନଜର ପଡ଼ିଛି, ଗୋଟେ ଲେକର ଘରେ ! ହୁଁ ( ପୁଣି ବୁଲିଲେ ) (ଦୂରରୁ ଶୁଭୁଛି ଗୀତ—ଜମିଦାର କାନେଇଲେ) ଏମାନେ ଫେର କିଏ ? (ପଛ ଝରକା ଫିଟାଇ ଦେଖିଲେ । ପିଲା ବନ୍ଧୁ

ମିଶି ଦଳେ ଲୋକ ପଥରେ ଯାଉଛନ୍ତି ଗାଇ ଗାଇ ମୁଷ୍ଟିଭିକ୍ଷା ମାଗି—ଦଳକୁ ଗୃହନା କରୁଛନ୍ତି ଅନନ୍ତ )

—ଗୀତ—

ମୁଠେ ଭାତ, ଧାଅ ଭାତ
ଭିକାରୀ ନ କର ଅମକୁ ଅଧନେ ପଡାଇଲୁ ବୋଲି ହାତ

କମି—ଯେବୃ ଫେର କଏ ? ଓଃ, କଙ୍ଗାଳ ଦଳ । ଲିଡ୍ କରୁଛନ୍ତି ଅମ ଅନନ୍ତବାବୁ ! ହୁଃ, ଯୋଗ୍ୟ ସନ୍ତାନ ! ( ଧଡ୍ ଭଡ଼ କରାହେବା ଅବଜାଇ ଘରୁ ବାହାରଗଲେ ଗୀତ ଶୁଭୁଥାଏ ।) (ସେଇ କୋଠରୀକୁ ଜମିଦାର କନ୍ୟା କଲ୍ୟାଣୀ ଟିକିଏ ଘଣ୍ଟଉ ଅସି ଦାମାକୁ ଡାକିଲେ)

କଜୁ—ଏଣେ ଅ ! ମଲ ସେତିକବେଳୁ ଗାଲଟା ଅଉଁଷି ଲାଗିଛୁ ନାଁ ?

ଦାମା—(ଅସି) ସେ କଅଣ ଗଲ୍ପଣିକା ଦେଇ, ବ୍ରହ୍ମଗ୍ରୁପୁଡ଼ିକି, ଦନେ କାଲେ ମତେ ହାକମ ମ ବୋଲି କହୁ ନ ଥିଲେ—

କଜୁ—ଅଜ କାହିଁକି କହୁଲେ ? ତୋ ଗୁଣରୁ—

ଦାମା—ଦେଇ, ମୁଁ ସିନା ଭଲକୁ କହୁଲି—ସେ ବୁଝିଲେ ଓଲଟା ।

କଜୁ—ତୁ ଭାବ ସିଧା କହୁଲୁ ନାଁ—

ଦାମା—ମୁଁ ଦେଖିବ ପଗ ଦେଇଛୁ ! ସାନବାବୁ ମେଞ୍ଚେ ନୋଟ୍ ଦେଇ ଠୋକାକ ଦେଲେ ।

କଜୁ—ତା ବୋଲି କଅଣ—

ଦାମା—ନାଁ, ସେ ଦବାରେ କଅଣ କିଛୁ କଥା ଥେଲୁ କି ? ତାଙ୍କ ଦବା ଠଙ୍ଗ ଭିତରେ, ଦେଲାବେଳାରସେ ଅଖି, ଗୁହାଁଣି— ଏଇ ସବୁ ଦେଖିଲେ—

ବଜୁ—ଦେଖିଲେ—ମାନେ ? ସାନ ବାବୁ ଜମିଦାର ପୁଅ । ଖୁସି ହେଲ—ପ୍ରଜାଙ୍କୁ ପାଞ୍ଚ, ଦଶଟଙ୍କା ଦେଲେ—ତା ବୋଲି—

ଦାମା—ଉହୁଁ, ଦେଇ ! ସେମିତି ପାଞ୍ଚ ଦଶଟଙ୍କା ହେଇଥିଲେ କଅଣ ମୁଁ କିଛି କହୁଥିଲ ନାଁ ? ସେ ପରା ମେଞ୍ଚାଏ—ହେଇଟି (ହାତ ଦେଖାଇ) ଏକଦମ୍ ଏତେ ।

ବଜୁ—ଏତେ ହେଉ, ସେତେ ହେଉ । ଦେଲେ ସେ ତାଙ୍କର ଖୁସି । ତୋର ଏ କଥା ବାପାଙ୍କ ଆଗେ କହିବା କଅଣ ଦରକାର ଥିଲା ? କଅଣ ନାଁ—ସାନ ବାବୁ ଗୋଟାଏ—

ଦାମା—ହଁ ଦେଇ ! ତାଙ୍କ ଆଖି, କାନ, ନାକ ଠିକ୍ କହୁଚ ସେ ଟୋକାଟା ତାଙ୍କୁ ନଷ୍ଟ କରିଦବ ।

ବଜୁ—ଉଃ, ତୋତେ କଷ୍ଟ ହୋଇଗଲା ପରା ?

ଦାମା—ହବ ନାହିଁ ନାଁ ? ଯେତେହେଲେ ତ ମୋର ସେ—

ବଜୁ—ହଁ ବୁଝିବ । ବୁଝିବ ବନ୍ଧୁବରେ ଗୁଳାର କଥା ପଚେହ ତାଉ ଦାନା ଛୁଟିବାବେଳ ହେଲେ । ବୁଝିଲୁ ?

ଦାମା—(ଅପ୍ରସ୍ତୁତ ହୋଇ ଗୁଳିପିବାକୁ ଯେମିତି ବାଟ ପାଉନି ନାହିଁ ତାକୁ—ଦୁଅରବନ୍ଧଟା ଟାଇଜର ଚାଳନା ମୁଣ୍ଡରେ, ଆଉଁଷି କହୁଲ) ଉଃ !

ବଜୁ—(ଖୁବ୍ ହସିଲା) Idiot ! (ଇଡ଼ିଅଟ) (କହୁ ମୁହଁ ଫେରାଇ ଦେଲେ । ଠିକ୍ ସେତିକିବେଳେ ପହଞ୍ଚିଲେ ଘରେ ଅନନ୍ତ ବାବୁ—ହାତରେ ତାଙ୍କର ଚେଟେଟି ଗୁଡ଼ାଏ କାଗଜ ମୋଡ଼ା ହୋଇରହିଚି । ସେଥିର idiot ଶବ୍ଦଟା ତାଙ୍କର ଅସିବା ବେଳକୁ ବାହାରିଚି—ଯେମିତି ଜଣା ତାଙ୍କୁଇ କହୁଲ ।)

ଅନନ୍ତ—(ଟିକିଏ ଅପ୍ରତିଭ ହେଲ ବୋଧହୁଏ କଥାଟା ଶୁଣି, ଠିଆ ହୋଇଗଲ ଥକା ମାରି—କହୁଲ) Idiot ?

ବିଜୁ—(ହସି) ହଁ, Idiot ! ତା ନ ହେଲେ—

ଅନନ୍ତ—କାହାକୁ କହୁଛ ତୁମେ ବିଜୟା ?

ବିଜୁ—ଧର ଯଦି ବା ପୁଣି ମୁଁ କହେ (ଖୁବ୍ ହସିଲା—ତା ପରେ କହିଲା ଅନନ୍ତଙ୍କୁ ଚାହିଁ ) idiot !

ଅନନ୍ତ—(କ୍ଷୁବ୍ଧ ହେଲେ, କଥାଟା ଶୁଣି) ବିଜୟା ! ଆଜି ଗୋଟେ ନୂଆ କଥା ଶୁଣିଲି—

ବିଜୁ—ଠିକ୍ ତ କହୁଛନ୍ତି । ନୂଆ କଥାଟାଏ ଶୁଣିବାକୁ ତ idiot ବୋଲି କହିଲି ।

ଅନନ୍ତ—କହିବାର ତୁମେ ଅଜି ବି କରୁଛ, ଖାଲି ଏଇଟିକି କାହିଁକି ?

ବିଜୁ—କହିବାର ଯଥେଷ୍ଟ ଅଧିକାର ବି ମୋର ଅଛି ।

ଅନନ୍ତ—କାରଣ ତୁମେ ଜମିଦାର କନ୍ୟା । ଧନପତିର—

ବିଜୁ—(ଅନନ୍ତ ବାବୁ ତାର ପରିହାସଟାକୁ ଭିନ୍ନ ଦୃଷ୍ଟିରେ ନେଇଛନ୍ତି ଦେଖି, ସେ ଦୁଃଖିତା ହେଲା ଏଥର ) ଅନନ୍ତ ବାବୁ ! ବାସ୍ତବିକ ତୁମେ—

ଅନନ୍ତ—(ଟିକିଏ ଡକାଇ) ହଁ, କହିଦିଅ । ଲଜ୍ଜା, ସଙ୍କୋଚ, ଭୟ କାହାକୁ ? ମୁହଁର କଥାଟା ଅଧା ରହିଗଲା ଯେ—କହ— ଅନନ୍ତବାବୁ, ବାସ୍ତବିକ ତୁମେ—( ହଠାତ୍ ଘର ଭିତରକୁ ଆସିଲେ ଜମିଦାର—ତେଣୁ କାହା ଉପରେ ବିରକ୍ତ ହୋଇ ଆସିଛନ୍ତି । )

ଜମିଦାର—Nonsence !

ଅନନ୍ତ—(ଅପ୍ରସ୍ତୁତ ହୋଇ ଚାହିଁ ରହିଲା)

ବିଜୁ—(ତାର ପିତାକୁ ଜାଣେ—ପୁଣି ହସି ହସି ପଚାରୁ ଦୁଇଁ ଗୋଟେ ଚଉକିରେ ବସି ସିଲେଇରେ ଲାଗିଲା ।)

ଇମି—(ଅନନ୍ତକୁ ଚାହିଁ) ତୁମେ ଏଠି ? ତେବେ ବାହାରେ ଏ ପାଲ

ଅନନ୍ତ—କଅଣ ?

ଇମି—ଗୋଳମାଳ ଛଡ଼ା ଦୋଳଯାତ୍ରା ? ଯୈତ୍ର ଅସମ୍ଭବ !

ଅନନ୍ତ—ମୁଁ ତ ଜାଣେଁ କଣ—

ଇମି—ଓଃ, ବୁଝି ପାରୁନା ? ଏଇ, ବାହାରେ ଏତେ ଲୋକ, କାହିଁକି ଏ ହମାଲ ? ଶୁଣିଲି ତୁମେ ଗୋଟାଏ Leader ହୋଇଚ ! ବାପର ଅନ୍ନଧ୍ୱଂସ କରି ବି. ଏ. ଟା ପାସ୍ କରି ସାରି ଅଙ୍କ ବୋଧହୁଏ କିଛି ବେପାର ମିଳିଲା ନାହିଁ ? ଶେଷରେ ଏଇ ରାଜଦ୍ରୋହ—

ଅନନ୍ତ—ରାଜଦ୍ରୋହ ?

ଇମି—ନୁହେଁ ? ଗୁଡ଼ାଏ କର୍ମକୁଡ଼ି କଙ୍ଗାଳଙ୍କୁ ମତାଇ ଏଗୁ ଲୀଳା ଲଗେଇଚ ? ତମ ବାପା, ମାଆ ବଞ୍ଚିଥିଲେ ତମର ଏ ଆଚରଣରେ ଯେ ଖୁବ୍ ଖୁସି ହେଇ ପାରନ୍ତେ—

ଅନନ୍ତ—ମୁଁ ତ ସେମିତି କିଛି—

ଇମି—ଅଁଉ, ଯ୍ୱାଠୁଁ ଅଧିକା ଅନ୍ୟାୟ ତୁମେ କଅଣ କରନ୍ତ ?

ଅନନ୍ତ—କ୍ଷମା କରିବେ, ଆପଣ ବୋଧହୁଏ ଉତ୍ତ୍ୟକ୍ତ ହୋଇପଡ଼ି-ଛନ୍ତି କୌଣସି କାରଣରୁ । ନ ହେଲେ୍—

ଇମି—କଲେଜର ବଡ଼ ଡିଗ୍ରୀଟାଏ ହାସଲ କଲେ ଲୋକ ଅନ୍ତତଃ ବୟସର ମର୍ଯ୍ୟାଦା ବୁଝେ ବୋଲି ମୋର ଧାରଣା ଥିଲା, ବୁଝିଲ ଅନନ୍ତ ?

ଅନନ୍ତ—ବୁଝି ପାରିଲି ନାହିଁ ମଉସା !

ଇମି—ବୁଝିବା ଦରକାର ନାହିଁ କିଛି । ତୁମେ ଏ ହମାଲ ଭାଙ୍ଗ ।

ଅନନ୍ତ—ଗରିବ ସେମାନେ, ନିରନ୍ନ ! ଆସିଛନ୍ତି ସେମାନେ ଦୁଃଖ ଜଣାଇବାକୁ, ଆପଣଙ୍କ ପାଖକୁ ।

ଜମି—ବନ୍ଧୁଲୋକ, ସେ ଧୈର୍ଯ୍ୟ ମୋର ନାହିଁ ।

ଅନନ୍ତ—ତାଙ୍କର ଦୁଃଖ ଗୁହାରି ଆପଣ ନ ଶୁଣିଲେ ମରିଯିବେ ସେ ସେଗୁଡ଼ାକ । କଏ ଧ ଧନ, କଏ ଝନାଝନ ହେଲ୍ଲ ଭାତ ମୁହଁ ଦେଖି ନାହାନ୍ତି ।

ଜମି—ବାଃ, ତା ପାଇଁ କଣ ମୁଁ ଦାୟୀ । ତୁମେ କହୁଚ ଖାଇବାକୁ ପାଉ ନାହାନ୍ତି । ତଥାପି ସେନ୍‌ସସ୍ ରିପୋର୍ଟରେ ତ ଲୋକ-ସଂଖ୍ୟା କମୁନାହିଁ ବରଂ ବଢ଼ୁଚି । ଲୋକ କମ୍ ହେବା ଦରକାର, ନଇଲେ ସମସ୍ତଙ୍କୁ ଦାନା ଯୋଗାଇ ହେବ କୋଉଠୁ ? ଗୁଡ଼ାଏ ମରନ୍ତୁ, ମରନ୍ତୁ ଗୁଡ଼ାଏ; ଏଇ କର୍ମକୁଡ଼ି ପଙ୍ଗପାଳ ଦଳ ସଫଳ ହୋଇଗଲେ ଅନ୍ତତଃ ମନୀଷ ଟିକିଏ ଆଶ୍ୱସ୍ତିର ନିଶ୍ୱାସ ମାରିବ, ଯାଅ, ତୁମେ ଯାଅ

ଅନନ୍ତ—ମହାଶୟ !

ଜମି—ବ୍ୟସ୍ତ ହେଇନାହିଁ ଅନନ୍ତ ! ତୁମେ ବର୍ତ୍ତମାନ ମୋ କଥା ବୁଝି ପାରିବ ନାହିଁ ।

ଅନନ୍ତ—ମହାଶୟ ! ମୋ କଥା ଟିକିଏ ଶୁଣନ୍ତୁ, ଗଉଣ୍ଟିଏ ଧ ଗଉଣ୍ଟି କରି ଧାନ ଏମାନଙ୍କୁ ଖମାରରୁ ପାଇବାକୁ ହୁକୁମ ଦଅନ୍ତୁ ! "ତୋଟକେ ଚିଇ, ଦଣ୍ଡେ ଜୀଇ" ଭଳି ଏ କାଳଟା କାଟିନେଲେ ଫେର ଏଇମାନେ ତ ଆପଣଙ୍କ ପ୍ରଜା ।

ଜମି—କିନ୍ତୁ, ମୁଁ ତା କରିବି କଅଣ ? ମୋର ଯେ ହାତ ଗୋଡ଼ ବନ୍ଧା—

ଅନନ୍ତ—ଆପ ଇଚ୍ଛା କଲେ—

ଜମି—ଇଚ୍ଛା କଲେ ସବୁ ଜିନିଷ ସବୁବେଳେ ହୁଏ ନାହିଁ—ଖଜଣା ଆଦାୟ ହେବାକୁ ନାହିଁ; ମାହାଲଟାରେ ଖାଲି ବାକୀ, ବାକୀ, ଶୁଆଡ଼େ ଶୁଣିବ ଖାଲି ଦଅ ଦଅ, ସେଦିନ ଅମର ଜଟେ

ନେତା ଘୋଷଣା କରିଛନ୍ତି Surplus Provinceରେ ପୁଣି
ଅଭାବ, ଅନାହାର ! ଦେଖିଲ ଦେଖିଲ ମଣିଷ ଅଧାପ୍ରାଣ ହେଲଣି,
ତେବେ ମଧ୍ୟ ରକ୍ଷା ନାହିଁ । ତତ୍ପରେ ଯାଉ ନାହାନ୍ତି—
ତାଙ୍କ ଦୁଃଖ ଥିଲେ ସେଠି ଗୁହାରି କରିବେ !

ଅନନ୍ତ—କୋଉଠିକି ଯିବେ ? ମୁଠାଏ ଭାତ ଆଶାରେ ତ ସେମାନେ
ଆସିଛନ୍ତି । ତାର ଗୋଟାଏ କିଛି ବ୍ୟବସ୍ଥା କରି ନ ଦେଲେ—

ଜମି—ତା ମାନେ ?— (ଦାମା ପ୍ରବେଶ)
(ଦାମାପ୍ରତି) କଅଣ ?

ଦାମା—ବାବୁମାନେ ସବୁ ଗୋଟିଏ ଗୋଟିଏ ଆସି ଗଲେଣି । ହଜୁରଙ୍କୁ
ଖୋଜୁଛନ୍ତି ।

ଜମି—ଅରେ, କେହି ନାହିଁ ତାଙ୍କୁ Receive କରିବାକୁ !
ସାନବାବୁ ?—

ଦାମା—ସେ, ତ—

ଜମି—ସେତ ?

ଦାମା—ନାହିଁ, ସେତ କେତେବେଳୁ ନାହାନ୍ତି ।

ଜମି—ବିଜା ! ଘର କୁଆଡ଼େ ଯାଇଛୁ ?

ବିଜା—ସେ, ସେ,—ହଁ ହଁ, ସିନେମା ଯିବେ ବୋଲି କହୁଥିଲେ ।

ଜମି—ସିନେମା ? ଏତେଗୁଡ଼ାଏ ଭଦ୍ରଲୋକ ନିମନ୍ତ୍ରଣ ! ଟିକିଏ ଭଲ
responsibility (ରେସ୍‌ପନ୍‌ସିବିଲିଟି) ଥାଅନ୍ତା ! ତୁ ଯା
ଦାମା, ଗୁମାସ୍ତାଙ୍କୁ କହ ଜାଗା କରନ୍ତୁ ।

ଦାମା—ଅଜ୍ଞା (ଚାଲିଗଲା)

ଜମି—ହଁ ହଁ ଶୁଣୁ, ପାନ, ସିଗାରେଟ—ଏଁ ?

ଦାମା—(ଫେରିଆସି) ଅଜ୍ଞା । (ଚାଲିଗଲା ।)

ଜମି—ଏଇ ତୁମେ ତାହାଙ୍କ ଠିଆହେଲ ଅନନ୍ତ ! ସେ କଙ୍ଗାଳ ପଲଙ୍କୁ ବିଦାୟ କରି ଦେଇ ଆସ । ଗୋଟାଏ ବେପାର ଲଗିଛି ଜମ୍ବୀ ଅସ୍ତୁ, ସାଙ୍ଗହେଇ ଏଇଟି ଖାଇବ ।

ଅନନ୍ତ—ମଉଷା, କୋଟିଏ ପ୍ରଜାର ବାପ ଆପଣ, ସେ ଗରିବ ! ଗୁଡ଼ାକ ମୁଠାଏ ମୁଠାଏ ଭାତ ପାଇଁ ଚାହିଁ ବସିଛନ୍ତି, ଆଜ—

ଜମି—ଓଃ, ବଡ଼ ଦରଦ ଦେଖୁଛ । ଗରିବ, ଗରିବ ପରି ରହିବାକୁ ତାର ଜନ୍ମ । ସେ ସୃଷ୍ଟି ନେଇ ଦୁନିଆରେ କିଛି ଉନ୍ନତି ହେଇ ପାରିବ ନାହିଁ । ଏସବୁ ବୁଝି ଛାଡ଼, ଏଇ କଙ୍ଗାଳ ପଲ ତୁମକୁ ମଣିଷ କରି ଦେବେ ନାହିଁ ।

ଅନନ୍ତ—କିନ୍ତୁ ସେମାନଙ୍କର ଗୋଟିଏ କିଛି ବ୍ୟବସ୍ଥା ନହେଲେ—

ଜମି—କଅଣ, ଯିବେ ନାହିଁ ସେମାନେ ? ଏଇଆ କହୁଛ ? ଅଚ୍ଛା, ମୁଁ ତାର ଠିକ୍ ବ୍ୟବସ୍ଥା କରି ଦେଉଛି, ଦାମା, ଦାମା !

ଦାମା—(ଆସି) ହଜୁର !

ଜମି—ବାହାରେ ସେ କାଙ୍ଗାଳ ଗୁଡ଼ାକ ସେମିତି ଅଛନ୍ତି ?

ଦାମା—ହଜୁର ଦାଣ୍ଡପାଙ୍କ ହଲ୍ଲା କରୁଛନ୍ତି । ଘୁଞ୍ଚିବାକୁ ନାହାନ୍ତି, ଏକା ଜିଦକରି—

ଜମି—ଆଉ ତୁମେ ସବୁ କଅଣ ମଲଣି ? କିଛି ଦେ, ଦେଖାହବ ନାହିଁ । ଯଦି ଭଲରେ ନ ଯାଆନ୍ତି, ବେତଦେଇ ନିକାଳିଦେ, ଯା । ( ଗୁଲିପିବାକୁ ବସିଲେ )

ଅନନ୍ତ—ମଉଷା ! ମୁହଦାର ଉପରେ ଚୋରଡ଼ା କାହିଁକି ? ପୁଅ ଝିଅ ସେମାନେ ଆପଣଙ୍କର । ଆପଣତ ଏକା ଜମ୍ବୀ ହଜୁର ବାପ ନୁହନ୍ତି, ମଉଷା ! ( କହୁ କହୁ ଗୋଡ଼ଧରି ପକାଇଲା !)

ଜମି—( ଗୋଡ଼ ଅଡ଼େଇ ଗୁଲି ପାଉଁ ପାଉଁ ) ହଁ, ତା ମୁଁ ଜାଣେ—

ଝିଅ—( ଅନନ୍ତ ବାବୁଙ୍କୁ ଉଠାଇ )—ଅନନ୍ତ ବାବୁ !—

## ୨ୟ ଦୃଶ୍ୟ

( ଜମିଦାରଙ୍କ ଫାଟକ ସାମନାରେ ନରନାରୀ ଛୁଆ ଗୁଡ଼ାଏ—ଟୋକଟୋକି ବାସ୍ତବ ଭିକାରୀ ଉପସ୍ଥିତ )

—ଗୀତ—

ମୁଠେ ଭାତ—ଦାଏ ଭାତ—ମୁଠେ ଭାତ
ଭିକାରୀ ନ କହ ଆମକୁ ଅଧନେ
ଫଳାଇଲୁ ବୋଲି ଭାତ
ଝାଙ୍କର ଭୁଇଁରେ ଆମ ଝରଣୀରେ
ଫୁଟାଇଲୁ ଦିନେ ସୁନାର ଫୁଲ
ମଣ୍ଡପ, ମନ୍ଦିର ଅଖିଆ ଗାଠେଣୀ
ସେ ହାତର ଆଜି ନ ଦେଲ ମୂଲ;
କଙ୍କାଳ ଉଟେ ଜୀଅଇ ରଖିଲେ
ଖାଟିବୁଁ ଜନମ ସାତ ।

(ଜମିଦାରଙ୍କ ଗୁମାସ୍ତା ଆସିଲେ)

ଗୁ—କାହିଁକି ଏଠି ହଲ୍ଲା ଲଗେଇଚ ? ଦେଖିବ ଏଇଟେନ । ଯା ସବୁ ଗୋଲମାଲ ଭାଙ୍ଗ ଏଠୁ ।

ଭି—ଗୁମାସ୍ତା ବାବୁ, କଏ ଦିନେ, କଏ ଦ ଦିନ ହେଲା ଉପାସ ଆସିଛୁଁ ଜମିଦାରଙ୍କ ଆଗେ ଆମ ଦୁଃଖ କହିବାକୁ, ଟିକଏ ଦେଖା କରେଇ ଦେଲେ ଚାଲିଯିବୁଁ ।

ଗୁ—ଦେଖା ଏଇନେ ହବ ନାହିଁ । ହାକିମଘର ଭୋଜ ହଉଚି । କେତେ ବଡ଼ ବଡ଼ ଲୋକ ଆସିଛନ୍ତି । ଏଇନେ ଭଲ ନାହିଁ

ତାଙ୍କୁ ? ବେଶୀ ଗୋଲମାଲ କର ନାହିଁ ଯା, ହାକିମ ଆମ୍ଭ ଉପରେ ରାଗୁଛନ୍ତି ।

ପ୍ର—ଆମେ ପୁଅ—ସେ ବାପ । ଆମେ ଠୋ ଠୋ ଉପାସ ମରୁଛୁ । ଦୁଃଖ କହିବୁଁ, ସେଥିରେ ଦେଖା ମିଳିବ ନାହିଁ । ହଉ ଯେତେ ବେଳଯାଏଁ ଦେଖା ନ ମିଳିବ—ଆମେ ଏଇଠି ବସିଲୁଁ ।

ଅଜଣେ—ହଁ ମ ଘରେ ଉପାସ—ଏଠି ଉପାସ ! ଓଲଟି ଘରକୁ ଗଲେ ପିଲା ମାଈପଙ୍କ ଶୁଖିଲା ମୁହଁ, କାନ୍ଦଣା,—ସେ ବାକ୍ୟ ଶୁଣିଲେ ଛାତି ଫାଟିଯିବ । ଏଠି ହେଲେ ବସି ରହ । ବସ, ବସରେ ସଭିଏଁ ।

ଦ୍ଧ—ତୁମେମାନେ ଯିବନାହୁଁ ତେବେ ? ମୁଁ ଭଲରେ କହୁଲି ଶୁଣିଲ ନାହିଁ ?

ପ୍ରଜା—କହୁଲୁଁ ପରା ଯାଉ ଯାହା ନ ଯାଉ ତାହା । ଆମେ ଏଇଠି ବସିଛୁଁ । ଯାହା କରିବ କର ।

ଗ୍ରୁ—ହଉ ତେବେ, ଦାମା—ଦାମା (ଦାମା ଆସିଲା)

ଦେଖେରେ ଦାମା—ଯେ ମୋ କାମ ନୁହେଁ-ଏମାନେ ଜିଦ୍ ଧରି ବସିଛନ୍ତି ଜମିଦାରଙ୍କୁ ଦେଖାକଲେ ଯାଇ ଯିବେ । ଯା, ଏଥିର ତୁ ବୁଝିହୁ—ସେ ବୁଝନ୍ତୁ ।

ଦାମା—ହଉ ଆଜ୍ଞା ! କରେ କର୍ମକୁଡ଼ିଏ—ଯାଉଚ କି ନାହିଁ । ତମ ଯୋଗୁଁ ଆମେ ଗାଳି ଖାଉଥିବୁ ? କାହିଁକରେ ? ଯିବ ନା ! ଫେର ଏଇନେ—

ପ୍ର—ଦେଖା କରି ଦୁଃଖ କହି ଚାଲିଯିବୁ ଦାମାଭାଇ, ଗୁମାସ୍ତା ବାବୁ ହିନା ହାକିମ—ତୁ କଅଣ ଗରିବଙ୍କ ଦୁଃଖ ବୁଝୁନାହିଁ ?

ଦା—ତା ହେଲେ ତୁମେ ଯିବ ନାହିଁ, ନା ?

ସମସ୍ତେ—ନାଁ—

ଦାମା—(ଠେଙ୍ଗାରେ ପିଟି) ହଟୋ ହଟୋ—ବୋଗା ଥାଉ ରଖିଚ ଛତରଖିଆଙ୍କୁ ଏଠି ? ଯା—

(ଲୋକେ ଭାଗି ଛୁଟିଲେ ଜମିଦାର ଦୋତାଲା ଉପରୁ ଚାହିଁ ଏ ଦୃଶ୍ୟ ଦେଖୁଥିଲେ । ହଠାତ୍ ସେ ଦଳ ମଧ୍ୟକୁ ଅନନ୍ତ ଆସିଲା ; ସେ ମଧ୍ୟ ମାଡ଼ ଖାଇଚି । ତାପରେ ଆହତ ଦୌଡ଼ି ଭର ବଜାୟା)

ବି—ଦାମା—ଦାମା !

ଦାମା—(ପ୍ରହାର ଉଞ୍ଚାଉଥିଲା—ଅନନ୍ତ ଉପର ମାରିବାକୁ)

ଜମି—(ଉପରୁ ଡାକିଲେ) ଦାମା !

(ଦାମା ହାତରେ ଉଞ୍ଚାଇଥିବା ବାଡ଼ି ସେହିପରି ରହିଗଲା—ଜମିଦାରଙ୍କୁ ଫେରି ଚାହିଁ)

---

## ୩ୟ ଦୃଶ୍ୟ

### ଜମିଦାରଙ୍କ କକ୍ଷ

(ଅନନ୍ତ ଓ ଜମ୍ବୀ । ଜମ୍ବୀ ମୁଣ୍ଡରେ ଆଘାତର ଚିହ୍ନ)

ଅନନ୍ତ—( ଜମ୍ବୀ ମୁଣ୍ଡରେ ଆଘାତ ସ୍ଥାନରେ ହାତ ରଖି ଚାହିଁ ) ଦୁର୍ଯୋଗ, ଦୁର୍ଯୋଗ !

ଜମ୍ବୀ—ସୁଯୋଗର ସୂଚନା ନ ଥିଲେ ଦୁର୍ଯୋଗର ଛାୟା ପଡ଼େନାହିଁ

ଅନନ୍ତ—ଏଇଟା କଅଣ ?—

ଅନନ୍ତ—ନାଁ, ସେ ବିଶ୍ୱାସ ମୋର ଅଛି ।

ଜମ୍ବୀ—ସେଇ ବିଶ୍ୱାସଟାଇତ ମନୁଷ୍ୟର ଆଶ୍ୱାସ ।

ଅନନ୍ତ—ବାବୁ ! ଏ (Philosophy) ଫିଲଜଫି—ଜବର୍‌ ! 
ଜୟୀ—ଏହାରେ ଯାଉନାହଁ ନାଁ ? ଭାବ ଅଣ୍ଡା ।
( ବିଜୟା ଚା ନେଇ ଆସେ )
ବିଜୟା—ଭାବ ଅଣ୍ଡା ? ବାଃ, ମୁଁ ନିଜେ ଏଇନେ ତିଆରି କରି ଆଣୁଚି ।
କହୁଲେ କଅଣ ନା ଭାବ ଅଣ୍ଡା ! ଅଗ୍ନି ଦେଖି ( ଟେବୁଲରେ ଥୋଇ ଗୋଟେ କପ୍ ଅନନ୍ତଙ୍କ ମୁହଁ ପାଖେ ଧରିଲେ )
ଅନନ୍ତ—ଅହାଃହା, ( ହାତରେ ଛୁଆଁଇ ) ଗରମ ଗୁରୁ ଯେ, (ହାତ-ବାଜ ତଳିଗଲା ଟିକିଏ ) ଆଉ ଚା ଛଡ଼ା—
ବିଜ—(ଅନନ୍ତ ପ୍ରତି) ଅନନ୍ତ ବାବୁ ! ବାସ୍ତବିକ୍ ଆପଣ ଗୋଟେ—
ଜୟୀ—ବିଜ !
ବିଜ—ଦେଖ ନାଁ ଭାଇ ! ଏମିତି ଯେବେ ମୋତେ ଅପମାନ ଦେବାର ମନ ଥିଲା—
ଅନନ୍ତ—( ଆଶ୍ଚର୍ଯ୍ୟ ହୋଇ ) ଅପମାନ !
ବିଜ—ନହେଁ ? ଏତେ ଆଦରରେ, ମୁଁ ହାତରେ ତିଆରି କଲି, ନଖାଇ ପାରିଥାନ୍ତେ—କିନ୍ତୁ ଢାଳିଦେଇ—
ଜୟୀ—( ହସି ) ଓଃ, ଏଇହେଲା ତୋର ଅପମାନ ? ଖୁବ ସେନ୍‌ସି-ଟିଭ୍ ଟେ !
ଅନନ୍ତ—ଇଚ୍ଛା କରି ତ ମୁଁ ଢାଳି ଦେଇନାହିଁ । ଆଉ ଏଥିରେ ବା ଏମିତି ଅପମାନ—
ବିଜ—ସମ୍ମାନ ଯାହାର ଥାଏ ଅପମାନ ତାକୁଇ ବାଧେ ।
ଅନନ୍ତ—ଜୟୀ, ଶୀଘ୍ରଓ ଭାଇ, ମୁଁ ଚା ପା ଖାଏ ନାହିଁ, ବିଶେଷତଃ ଚା ଖାଇବାର କ୍ଷମତା ବା ମୋର କାହିଁ ? ଅକାରଣରେ ମୋତେ ଜବରଦସ୍ତି କରି ଏ ସବୁ ଗଣ୍ଡଗୋଳ—
ବିଜୁ—ଓଃ, ତୁମେ ତାହେଲେ ଏ ସବୁର ଦୋଷୀ !

ଜସ୍ମୀ—ବାଃ ରେ ଦେଶଘରେ ମୋର ବଦ୍‌ନାମ ?

ବିଜୁ—ମାଷ୍ଟର୍, ତୁମେ ମୋ ପାଖକୁ ଖବର ପଠାଉ ନାଁ ? "ବିଜୁ ବାବୁ ମୋ ଘରକୁ ଆସନ୍ତୁ । ଅନନ୍ତ ଆଜ ମୁଁ"—ଅନନ୍ତ ବାବୁ ଖାଇବେ ବୋଲି ସିନା ମୁଁ ଆସିଲେ—ବେଶ୍ ଏସବୁ ଗାଳିବାର ଯୋଗ ଅଛି । (ଟ୍ରେ ଟେବୁଲ୍‌ରୁ ନେଇ ଚାଲିଗଲା ଘର ଭିତରକୁ ।)

ଜସ୍ମୀ—(ଉଠି) ଆରେ ! ଅରେ ! ସବି ଚାଲିଯାଉଚ୍ଛ ଯେ, (ଧରିଆଣି—ଟ୍ରେ ଟିକୁ ଟେବୁଲ ଉପରେ ରଖି ) ଅନନ୍ତ ! ନେ ବାବୁ, କପେ ଖାଅ, ନାଁ, ଯୋଗ୍ୟତା ପାଉଣ ହେବଯିବ ନାହିଁ ତ ! ଏ ଗଣ୍ଡଗୋଳ ଭାଙ୍ଗୁ (ଚାଳି କପେ ଦେଲା ) ।

(ଅନନ୍ତ କୁଣ୍ଡିତହୋଇ ଟ୍ରେ ନେଲା—ବିଜୟା ଚାହିଁଛି)

ବିଜ—ଓଃ ! ଭାଇଙ୍କ ହାତକୁ ଅପେକ୍ଷା ଥିଲା ? ବାସ୍, ସେଇଆ କହୁଥିଲେ ତ ହେଇଥାନ୍ତା, ଅଚ୍ଛା ! ଅପାତତଃ ଧନ୍ୟବାଦ ।

(ଭିତରକୁ ଗଲା)

ଜସ୍ମୀ—( ହସି ଟ୍ରେ ଧରି ବସିଲା ) ଖାଉନାହଁ ରେ, ତା କଥା କଅଣ ଶୁଣୁଚୁ ? ଖା ।

ଅନନ୍ତ—( ଚଟ୍‌ହୋ ମୁହଁ ପାଖକୁ ନେଇ ଓଠରେ ଲଗାଇ ଫେରାଇ ଆଣିଲେ ) ଓଃ, ବଡ଼ ଗରମ—

ବିଜ—(ଘର ଭିତରୁ ମୁହଁ ଦେଖାଇ) ଜଗାକୁ ଡାକେଁ, ଗ୍ଲାସେ ପାଣି ଦେବ, ମିଶେଇ ଦେଲେ ଥଣ୍ଡା ହେଇଯିବ, ଜଗା, ଜଗା !

ଜସ୍ମୀ—( ହସି ) ଆରେ କି ଦୁଷ୍ଟ ତୁ ? ସିଲ୍ଲି ଗାର୍ଲ୍ !

ବିଜୁ—( ଖୁବ୍ ହସି ) ଭାଇ, ଟିକିଏ ଅନନ୍ତ ବାବୁଙ୍କୁ ବୁଝେଇ ଦିଅ, ଏଠା ସହବାଜ୍ କାହିଁ—ଟ୍ରି । ( ହସି ଚାଲିଗଲା )

ଲକ୍ଷ୍ମୀ—ଅନନ୍ତ, ବଳଙ୍ଗାକୁ ଟିଲଧନେ ଯାତ୍ରା ଦେଖିଥିଲୁ; ଆଜି ଠିକ୍ ସେହିପରି, କିଛି ମନରେ ଧରନା । ଆମ୍ଭ କଥା ପଡ଼ି ! କଅଣ ତୁ ଭାବୁଥିଲୁଟି ? ଏଥର ଟିକେ ମନଦେଇ ଶୁଣିବୁ । କମିତ ଏକ ବଦଭ୍ୟାସ, ସଞ୍ଜବୁଢ଼େ ଗରମ ପାଣି ଟୋପାଏ ନ ପଡ଼ିବା ଯାଏ, ମନଟା ତୋଜଥିରେ ଲାଗେ ନାହିଁ । କହ, ତୁ କଅଣ ଭାବୁଥିଲୁଟି ?

ଅନନ୍ତ—( ଚା ଭଗ୍ ଧରି ଅନ୍ୟମନସ୍କଭାବରେ ଚାହିଁ ରହିଥାଏ । ଲକ୍ଷ୍ମୀର କଥା ଯେପରି ଶୁଣି ନାହିଁ )

ଲକ୍ଷ୍ମୀ—( ଅନନ୍ତକୁ ତଦ୍‌ବସ୍ଥା ଚାହିଁ ) କିରେ ! ( ଚା ଖାଇଲା )

ଅନନ୍ତ—( ଚମକି ) ଏଁ, ହଁ, କଅଣ ପଚାରିଲୁ ?

ଲକ୍ଷ୍ମୀ—ବେଶ୍ ! ଆରେ ଚା ଟା ଖାଇଦେ, ଏମିତ ଅନ୍ୟମନସ୍କ ହୋଇ ଚାହିଁ ରହିଛୁ ଯେ ! ବୋଧହୁଏ ତତେ ଟିକିଏ—ବଳଙ୍ଗାର ଏ ପର୍ଯ୍ୟନ୍ତ—

ଅନନ୍ତ—ନାଁ, ନାଁ, ସେ କିଛି ନୁହେଁ, ଏଁ, ତୁ କଅଣ ପଚାରୁଥିଲୁ ?

ଲକ୍ଷ୍ମୀ—ଚା ଟା ଖା—

ଅନନ୍ତ—ମୋର ତ ଚା ଖାଇବାର ଅଭ୍ୟାସ ନାହିଁ ।

ବିଜି—(ଜଳଖିଆ ନେଇଆସି ) ଏ ଅଭ୍ୟାସ ହୁଏ ତ ନିଶ୍ଚୟ ଅଛି ! ( ହସିଲା )

ଅନନ୍ତ—( ଅପ୍ରସ୍ତୁତ ହୋଇ ଚାହିଁ ରହିଲା )

ଲକ୍ଷ୍ମୀ—ବିଜି, ଖେଳ ମାଡ଼ ବି ବେଳେ ବେଳେ ଲାଗେ । ଯା, ଜଳଖିଆ ରଖିଦେଇ ଯା ।

ବିଜି—କିନ୍ତୁ ଭାଇ, ଯାହାକୁ ବି ମୁଁ ନିଜେ ହାତରେ ତିଆରି କରିଛି ! ( କହି କହି ଚାଲିଗଲା ) ଅନନ୍ତ ବାବୁ ! ଏକ୍‌ସକ୍ୟୁଜ୍ ମି ।

ଜସ୍ମୀ—( ହୋ ହୋ ହୋଇ ହସିଉଠିଲେ ) ଦେଖୁଚ ଅନନ୍ତ !
ବେ ଚଲା, କଅଣ କହୁଥିଲ ଟି ?

ଅନନ୍ତ—ସେଇ ଲୋକଗୁଡ଼ାଙ୍କ କଥା ।

ଜସ୍ମୀ—ତୁ କଣ ଭାବୁଚୁ ?

ଅନନ୍ତ—କିଛୁ ଭାବି ପାରୁନାହିଁ ଭାଇ, ଗୋଟାଏ ବାଟ ମୋତେ ଦିଶୁଚି, ସେଇଟା ବୋଧହୁଏ ତମ ବାପା ପାଇନ୍ତେ ।

ଜସ୍ମୀ—କିନ୍ତୁ—

ଅନନ୍ତ—ହିଁ, ସେଇ କିନ୍ତୁ ଠିକ୍ କ ତ ସେଥିରେ ଅଛି । ତାଙ୍କୁ ବାଟେଇ ପାରିଲେ, ଲୋକ ଗୁଡ଼ାକ ବଞ୍ଚିଯାଆନ୍ତେ ।

ଜସ୍ମୀ—କଣ କହୁନାଉଁ ?

ଅନନ୍ତ—କିଛି ଠିକା, ଅଜ କିଛି ପ୍ରୁଡ଼୍‌ଷ୍ଟପ୍, କିରକମ ପ୍ରଜାଗୁଡ଼ାଙ୍କୁ ଜଗାଇ ଭଲ ଦେଇ, ଥୋଡ଼ାଏ ଧନ ଠାଣି ଠୁଣି ନେଲେ, ଏଇ ଅଇଦା ଫସଲଟା ଉଠିବା ଯାଏ ଅନ୍ତତଃ—

ଜସ୍ମୀ—( ଭାବନାରେ ବସିଲ )

ଅନନ୍ତ—ଅଜ ଗୋଟାଏ ଦୁଃସମ୍ବାଦ ଶୁଣିଚ ନାଁ ? ଖାଇବାକୁ ନପାଇ ପେଟ ଗରମ ହୋଇ, ଠାଏ ଠାଏ ହଇଜା ଦେଖାଗଲାଣି ।

ଜସ୍ମୀ—ଅରେ ଅରେ, ବେଡ଼ୀ ଉପରେ କୋରଡ଼ା ! ପବ୍ଲିକ୍ ହେଲ୍ଥ ଡିପାର୍ଟମେଣ୍ଟକୁ ଗୋଟେ ଖବର ଦେବାକୁ ହେବ—ଖୁବ୍ ଶୀଘ୍ର !

ଅନନ୍ତ—ସେଥିରେ ଯେ ବିଶେଷ କିଛି ଲାଭ ହେବ—

ଜସ୍ମୀ—କାହିଁକି ?

ଅନନ୍ତ—ପେଟକୁ ଭାତ ଦର୍କାର ବାବୁ, ଭାତ ନଥିଲେ ପେଟରେ ଇନକୁଲେସନ୍ ର ଲାଭ ?

ଜ୍ୟୋତ୍ସ୍ନା—ଠିକ୍; ତଥାପି ପାଖ ଅଖ ଯାଗାଗୁଡ଼ାକ ଟିକଏ ପରିଷ୍କାର ପରିଚ୍ଛନ୍ନ ରଖିବା, ପିଇବା ପାଣିଟା ଫୁଟାଇ ଛାଣି ପିଇବା, କୁଅ ଡିସିନ୍‌ଫେକ୍ଟ କରିବା—ଏଗୁଡ଼ିକ ତ ଦରକାର୍ ଅଛି ।

ଅନନ୍ତ—ହଁ, ସେଥିପାଇଁ ଅବଶ୍ୟ ଲୋକଙ୍କର କୋଅପରେସନ୍ ଦରକାର—

ଜ୍ୟୋତ୍ସ୍ନା—ଏଇତକ ପାରୁନାହୁଁ ଟି ! ଆଉ ଦେଶସେବା ! ଅଚ୍ଛା ମୁଁ ଆଜି ଯାଇ ତୋ ପାଇଁ ଫିଲ୍‌ଡ଼୍ ଠିକଣା କରିଦେଇ ଆସୁଚି ! ଗାଆଁର ଘରେ ଘରେ—

ଅନନ୍ତ—ବୁଝିଲି, ବୁଝିଲି, ତା ଆଗରୁ ତୁ ଥରେ ଗାଆଁ ପୋଖରୀ ଗୁଡ଼ାକ ଦେଖିଆ, ଗୋଟେ ଆଇଡ଼ିଆ ତୋର ହୋଇଯିବ ତ । ଏଇ ହରିପୁରଟା ତ ପାଖରେ । ସେଇଠୁ ତୁ ଷ୍ଟାର୍ଟ୍ ଦେଇ ଆଗେ ଦେଖିବା—

ଜ୍ୟୋତ୍ସ୍ନା—ଅଚ୍ଛା, ସେଇଆ ହବ—

ଅନନ୍ତ—ହବ ଯେ, ପୁଞ୍ଜି ତ ଦରକାର ।

ଜ୍ୟୋତ୍ସ୍ନା—ଦେଖାଯିବ, ଏ ସାମାନ୍ୟ ଟଙ୍କା ମୁଁ ଯୋଗାଡ଼ କରିଦେବି ।

ଅନନ୍ତ—ବାପାଙ୍କ ପାଖରୁ ଯଦି କିଛି—

ଜ୍ୟୋତ୍ସ୍ନା—ସେଇଟା କିନ୍ତୁ ଭୁଲ, ମୋ କାମ ନୁହେ ବଜାଙ୍କ ଧରିଲେ—

ରଜା—(ଭିତରୁ) ଥଣ୍ଡା ପାଣିର ବୋଧହୁଏ ଦରକାର ପଡ଼ିଚନ୍ତି । ତେଣୁ ମେ ଆଇ କମ୍ ଇନ୍ ?

ଜ୍ୟୋତ୍ସ୍ନା—ଆ, ଆ, ତୋ ପାଖେ ତ ଗୋଟେଏ ବଡ଼ କାମ ଅଛି ।

ରଜା—( ଅସିତ ଦୁହାତରେ ପାଣିନେଇ ) କାମଟା କାହାର ଶୁଣେ ?

ଜ୍ୟୋତ୍ସ୍ନା—ମୋର ଆଜି ଅନନ୍ତର ବି—

ବିଜ—Oh, good heavens ! ଅନନ୍ତ ବାବୁଙ୍କର ? ବେଶ୍,
ତାହେଲେ ଶୁଣାଯାଉ (ସ୍ବାସ୍ ଥୋଇଦେଇ ଅଖିବୁଜି ଛିଡ଼ାହେଲା )

ଜୟନ୍ତୀ—( ଅନନ୍ତଙ୍କୁ ଠାର ହସି ) ଅନନ୍ତ !

ଅନନ୍ତ—ବସ ନା ବିଜୟା—ବସିଲେ ସିନା ଶୁଣିବ !

ବିଜ—ଓଃ, ଆପଣଙ୍କର ଅନୁରୋଧ (ଦୀର୍ଘନିଃଶ୍ୱାସ ମାରି) ଧନ୍ୟବାଦ୍ !

ଅନନ୍ତ—କଥାଟା ଶୁଣି, ବସ !

ବିଜ—( ହସି ବସିଲା ) ଧନ୍ୟବାଦ !

---

## ୪ର୍ଥ ଦୃଶ୍ୟ

### ହରିପୁର ଗାଁ ଦାଣ୍ଡ

( ଚୈତନ୍ୟ ଓ ରତନା କଥାବାର୍ତ୍ତା ହୋଇ ଆସିଲେ )

ଚୈତ—( ଭିତରୁ ରତନାକୁ କାନ୍ଧ ବନ୍ଧୁ ଆସିଲା ) ଅରେ ସ୍ବାଙ୍କୁ ଟିକିଏ ଆ !

ରତନା—(ଆସି) କଥାଟା କହୁରୁ, କଅଣ କାଏ ମୁଣ୍ଡ କାଟି ନେଉଛି ?
ଅମ ଗାଁ ଭୂଇଁ କଥା ଅମେ କଥାଭୁଷା ହଉଚୁଁ ।

ଚୈତ—ତୁ ନିହ, ଗୋଟେ ଡବଡବାଟାଏ ତୁ, କଥାଟା କିଛି ଜାଣିବାକୁ ନାହିଁ । ମିଛଟାରେ ଗୋଟାଏ ହଲ୍ଲା କରୁଚି, ଅଗ ଶୁଣ,
ଅରେ—ରଦ୍ଧୁ ପଧାନ ମୁଣ୍ଡରେ ଏଇନେ ଗଙ୍ଗ ଜଳସ୍ ଢାଳିଚି !
ଦେଖୁନୁ ସଞ୍ଜ ସକାଳେ ତା ଦୁଆରକୁ କେଇଥର ଯାଇଲାଣି
ଅପେ—ଘଣ୍ଟି ଟିଣି ଟିଣି କର ।

ରତନା—ହଁଏ ବାବୁ କାହାଁ କଥା ବୁଝୁଛ, ଅପଣା ଦୁଃଖରେ ତ ବାଁଚି
ବାଉର ନାହିଁ । ଘ ଧନ ବାଲ ( ଅଣ୍ଟାରୁ ଚଉଡା ହୋଇ-
ଥିବା ଖଣ୍ଡେ ଠେଙ୍କାକିଅ ନୋଟ୍ କାଢ଼ି ) ହେଉଛି ଦେଖ୍‌
ଏଖଣ୍ଡ ନେଇ, ତନଖଣ୍ଡ ଗାଁ ବୁଲି ଅଇଲି ଯେ, ଧାନ ତ
ମିଳିବାକୁ ନାହିଁ । ବହୁତ ଖୋସାମତରେ କଏ ବ ଯେବେ
ଦୁଇ ସେରକେ ଦେବାକୁ ରାଜିହେଲ, ସେ କହୁଛି ସୁନା
ଅଣ, ନଇଲେ ରୁପା ଅଣ, ତେହ୍ନୁଁକ ଧୀଅ ମାଇପ ନଙ୍ଗଳା ।
ନାକରେ କାନରେ ଯାହା ଥିଲା, ସବୁତ ବନ୍ଧା ଗ୍ରାଇଁ ଯେଠେକେ
ପଡ଼ିସାରିଛି !

ଚୈତ—ଅରେ ରେ ଅମ ଗାଁରେ ଧାନ !

ରତନା—ଗାଁ ରେ ଧାନ ! ଗାଁରେ ! ମୁଷ୍ଟା ଏକାଦଶୀ କରିବାକୁ
ଯୋଉଠି ଅଗାଡ଼ିଟାଏ ମିଳିବାକୁ ନାହିଁ—

ଚୈତ—ଅରେ ଅଜ ସକାଳେ ଏବେ ରଘୁଦାସ ଘର ବକିଛି
୨୦ ଟଙ୍କାର ଧାନ ।

ରତନା—ରଘୁଦାସ୍ ! ୨୦ ଟଙ୍କାର ଧାନ !

ଚୈତ—ହଁ, ହଁ, ବଦୁଦାସେ, କୋଡ଼ିଏ ଟଙ୍କାର ଧାନ । ଏଇ ଅଖିରେ
ଦେଖିଛି, ଏଇ ହାତରେ କଣିଛି, ମିଛ ଯେବେ ମଶୁରୁ ଗାଅଁ
ଯାଇ ପଚୁର । କହୁଲି ପର ଗଜ କଲସ୍ଥତାଳିଛି, ରଘୁଦାସ ଅଉ
ସେ ରଦୁଦାସ ହେଇ ନାହିଁ, ରଦ୍ଦାସ ଏଇନେ (ଗୁଇଅଡ଼କୁ
ଗୁହିଁ ରତନା କାନରେ ଫୁସୁଫୁସୁ କର କେତେଗୁଡ଼ାଏ
କଥା କହୁଲା ) ବୁଝିଲୁ, ନଡ଼ିଆର ବୋଉ ଶିରିରେ ପାଣି !

ରତନ—ହେଲା ଏବେ, ମାରି କଅଣ ?

ଚୈତ—ମାରି କଅଣ ! ହଇରେ ବାଲ—ଭଲ । ରଘୁଦାସ ବାବନ
ହେଇ ଚନ୍ଦ୍ରକୁ ହାତ ପକଉଛି !

ରତନା—କିଏ ଏବେ କାହାକୁ ହାତ ପତଉଛି କିଏ ଜାଣିଲା ? ଗୃହ ବାବନକୁ ହାତ ବଢଉଛି କି ବାବନ ଗୃହକୁ ହାତ ବଢ଼ଉଛି, ଆମର ଭାଇ ଏତେ କଥାରେ ଯାଏ କେଉଁଠି, ଆଉ ସେ କେଉଁଠି ? ମୋଟ ଉପରେ ଯଦିବା ଏକଥା ସତ, ରଘୁଦାସ ତ ଆଉ ଅଜାଡିରେ ପଶିଯାଉ ନାହିଁ ?

ଚୈତ—ବାକି, ସାଆନ୍ତଙ୍କ କାନରେ ଏକଥା ପଡ଼ିଲେ, ରଘୁର ଯାନ ଅସନ ରହିବ ନାହିଁ । ଜାଣିଛ, ତାଙ୍କୁ ଆମ ଗାଁର ଗୁଣ୍ଡାଙ୍କ କେମିତି ଗନ୍ଧାନ୍ତି ?

ରତନା—ଆରେ ବାପୁରେ ଗରିବ । ଯେତେ ଟେଙ୍କାଉଠାଉଛି, ଆଉ ଗାଧ-ବାସନା ଖୋଜୁଛୁ ? ଏ କେଳବୁଡ଼ା ହେଲାଣି, ରଘୁ ଏତେବେଳେ ଧାନ ଦବନି ?

ଚୈତ—ଦବନାହିଁ କାହିଁକି ? ସମସ୍ତଙ୍କୁ ଦଉଛି, ତତେ ଦବ ନାହିଁ କାହିଁକି ? ତୋର ଜଉଡ଼ିରେ କଅଣ ସନ ନାହିଁ ? ତୁ ଶୁଣିଲୁ—ଭୂତ ପାଇଁ ଫଜାର ପଇସାଙ୍ଗୁଡ଼ା ହେଉଛନ୍ତି । କଅଣ ଆଉ କହିବା, କାହାକୁ ?

ରତନା—ଧରିତା କଅଣ ଭାଇ ! (ଚୁପ୍ ଯାଉଥିବ) ଉଠେହୋ, ଯେତେଠା କେମିତି ଡାକି ଦେଲରେ ! ମୁଁ ବଡ଼ଦାଣ୍ଡ ହୋଇ ଯାଉଛି ଶୁଣ, ଆଗରେ ତୁ ଚାଲ । ମୁଁ ଅଣ୍ଟାଗାଣ୍ଠିଟା କରିଦେଇ—

(ବେଗେ ଚାଲିଗଲା)

ଚୈତ—ହଉ, ହଉ, ଆ—ଯିବାକୁ ତ କଅଣ ତ ଯାଇବୁ ହଇଲା !

(ବେଗେ ଚାଲିଗଲା)

(ରମା ଓ କେତେଜଣ ଗ୍ରାମବାଳିକା ଗାଇ ଗାଇ ଚାଲିଗଲେ)

—ଗୀତ—

ସଙ୍ଗ ଲୋ, କୁଞ୍ଜେ ମୂରଲୀ ବାଜିଲା—
ଶାଳିକ ତର ତର ଶ୍ରବଣ ଥର ଥର
କାଳିଆ କି ମୋହନ କଲା—
ଅସି ସଞ୍ଜହେଲା—ସଙ୍ଗ ଲୋ । ୧ ।
ନନ୍ଦ ଭଗାରୁଣୀ କାପଡ଼ ଅସ୍ତରଣୀ
ଗୋପ ବଜାରେ ହୁରି କଲା—
ରାଧା ଜୀଇ ମଲା—ସଙ୍ଗ ଲୋ । ୨ ।
( ଗାଇ ଗାଇ ଗୃଲିଗଲେ )

(କିଛି ବେଳ ପରେ ଅସିଲେ କଥାଭାଷା ହେଇ ଜ୍ୟୋତି ଓ ନରେନ୍ଦ୍ରଙ୍କ ସହିତ ଦେବେନ୍ଦ୍ରଙ୍କଣ ଗାଁ ଲୋକ )

ଜ୍ୟୋ—କୃଅରୁ ଖାଅ ।

ଡ—କେଉଁ ତଅଣ ସମିତଙ୍କର ଅଛି ବାବୁ ? ପଧାନ ସାଇ ଗୋଠା- ଗାଳର ଅଣସବ ତ ଏହ ପୋଖରୀର ପାଣି ଛୋପିକୁ । ଖିଅ ପିଅ ଗାଧୁଆ ପାଧୁଆ ସବୁତ ଏଇଠୁ ।

ନ—ହଁ, ହଁ, ଏମିତ ହେଲେ ତ ଚଳିବ ନାହିଁ । ଏସବୁ ବନ୍ଦ କରିବାକୁ ହେବ ।

ଡ—କେମିତ ଅଜ୍ଞ ? ପାଣି ଛୋପାଏ ନ ପାଇଲେ ଲୋକେ କିନା ମରିବେ ?

ଜ୍ୟୋ—ଏମିତ ତ ଜାଣୁ ଜାଣୁ ମରୁଛନ୍ତି—ଆତ୍ମହତ୍ୟା । ଏଇ ବୋଲି ପୋଖରୀ ! ଗୋରୁ ମଇଁଷୀ ଗାଧୋଇବେ ଏଇଟି, ମଣିଷ ଗାଧୋଇବେ ଏଇଟି, ଗାଁର ଯାବତ ଅପରିଷ୍କାର ଲଗାପଟା ଧୁଆଧୋଇ ଏଇଟି, ପୁଣି ଏଇ ପାଣି ଲୋକେ ଖାଇବେ ।

ତ—ଖାଳକ୍ରାନ୍ତି ତ ଏମିତି ଜାଲ କାଳର ଅଙ୍କ, ଆଉ ଗତି କଅଣ ?

ଘ—ବନ୍ଦ କର, ବନ୍ଦ କର, ଗାଁରେ ହଇଜା, ସେଇ ରୋଗୀର କନାଘରା ଧୋଉଚ ଏଇଠି, ଏଥିରେ ରୋଗ ବଢ଼ିବ ନାଁ କମିବ ? ଏଥିରେ ତମର ଡ଼ାକ୍ତର କଅଣ କରିବେ ? ବଇଦ କଅଣ କରିବେ ? ଠାକୁରାଣୀ, ପାଣି ପଣା, ଦାଣ୍ଡ ଭାଗବତରେ ବା କଅଣ ହେବ ?

ଠ—ଅଉ ଢୋଉଚୁ ପାଣି ଠୋପେ—

ଛ—କୂଅ ଖୋଳାଅ ।

ଟ—(ହସି) ଧନ ହେଲେ ସିନା—ସରକାର ଏ ସବୁଥିରେ ଟିକିଏ ସାହାଯ୍ୟ ନ ଦେଲେ—

ଜ—ଚୈତନ ! ସରକାର, ସରକାର, ସବୁଥିରେ କେତେ କଅଣ କରିବ ସରକାର ? ଦେଖୁଛ ତ ଯୁଦ୍ଧ କଥା, ରାକ୍ଷସ ପରି ବଇରି ଗୃହଁନ୍ତି ଗିଳିବ ଆମ ଦେଶକୁ, ଜେଣେ ତ ଜର୍ମାନ ଠାକୁ ବସିଛନ୍ତି, ତାଙ୍କୁ ଜଗିବ ନାଁ ତମ କଥା ବୁଝିବ ? ସୈନ୍ୟସାମନ୍ତ-ଗୁଳିଗୁଳା କେତେ ଖରଚ ! ଏତେବେଳେ ସର୍କାରକୁ ସିନା ଆମର ସାହାଯ୍ୟ ଦେବାର କଥା—ସବୁ ତା ମୁଣ୍ଡରେ ଚପେଇଲେ ଚଳିବ କେମିତି ? ସେସବୁ ନୁହେଁ । ସାଇର ଏମୁଣ୍ଡେ ସେମୁଣ୍ଡେ କୂଅ ଦୁଇଟା ଖୋଳାଅ, ମୁଁ ଟଙ୍କା ଦଉଚି ।

ସମସ୍ତେ—ଯାନବାବୁଙ୍କର ଜୟ ହଉ—ହରିବୋଲ, ହରିବୋଲ !

ଙ—ହଁ, ହଁ, ଶୁଣ, ବାକି ଏ ଦ ଛନିଦ୍ଧନ ତୁମେ ଜଗ । ଯେମିତି କନାଘରା ଏଠି ଧୂଆ ନ ହୁଏ । ଅଉ ପାଣିଟା ଫୁଟାଇ ନେଇ ଝଣ୍ଡାକର ଖାଅ । ଗାଁ ଗୋଟାକଯାକ ମରିଯିବେ ଯେ ! ଏଇକ୍ଷଣି ଯାଇ ତୁମେ ଗାଁରେ ଲୋକଙ୍କୁ ସାବଧାନ କରିଦିଅ, ବୁଝିଲ ?

ଚ—ଅଜ୍ଞା ! ସାଇ ଏମୁଣ୍ଡ କୁଅଟା ଭଗବତ ଘର ପାଖରେ—

ଘ—ଅଚ୍ଛା ! ତୁମେ ଯା, ମୁଁ ଶାସନ ସାଇଟା ଦେଖି ଆସେଁ, ପଧାନ ସାଇର କୂଅ ଖୋଳା ଥାନ ମୁଁ ଯାଇ ଠିକଣା କରିଦେବ । ତୁମେ ଆଗକର ଯାଇ ଭାଗବତ ଘରଠି ଲୋକଙ୍କୁ ରହିବାକୁ କହ ।

ଚ—ଅଜ୍ଞା, ଅଜ୍ଞା ।     (ଉଭୟେ ଚାଲିଗଲେ)

(ଗାଁ ର ପବନା ଗଉଡ଼ ଆସି ରଇତନାଅକୁ ପଚାରିଲା)

ପବନା—କିରେ ! କଅଣ ହେଲା ? ମୁଁ କହୁନାହିଁ ? ସାନବାବୁଙ୍କ କାନରେ ପଡ଼ିଲେ କଥାଟା ରହିବ । ପେର କେବେ ଦବାକୁ କହିଲେ ?

ଚ—କଅଣ ବା, କିରେ କଅଣ ଦେବେ ?

ପବନା—ଆରେ ଗୁରୁଜୋଡ଼ି ନବା—ପାଞ୍ଚଜୋଡ଼ି ଦବା । ଆମକୁ କଅଣ କିଏ ସେମିତ ଦେଇ ଦାଉଛନ୍ତି ? ଏଥିରେ ସେ ରାଜି ହେବେ ନାହିଁ କାହିଁକି ?

ଚ—କିରେ କଅଣ ଗୁରୁଜୋଡ଼ି ପାଞ୍ଚଜୋଡ଼ି ?

ପବନା—ଧାନ ପଣ୍ଡା ।

ରତନା—ଧାନ କଥା ଏଠି ପଡ଼ିଥିଲା ?

ପବନା—ଆଉ ?

ରତନା—ସାନବାବୁ କହିଲେ—ଅଜାଙ୍କୁ କାହାର ଗାଈ ମଇଁଷି ଏ ବନ୍ଧରେ ଗାଧୋଇବେ ନାହିଁ ।

ପବନା—ହଇରେ ରଇତନାଅ ! ତୁ ଏବେ ଏଇଆ ସାନବାବୁଙ୍କ ଆଗରେ କହିଥିଲୁ ? ମୋ ଗାଈ ମଇଁଷି ବନ୍ଧରେ ଗାଧୋଉଛନ୍ତି ?

ଚ—ହଇରେ ମୁଁ ଏଇକଥା କହିଲି ? ସତରେ ତୋ ନାଁ ବାପ ମାଆ ବାଛୁକରି ଦେଇଛନ୍ତି ପବନା ବୋଲି ।

ଯବନା—ହେଉଛି ଏଇ ଘଟଣା କହୁଛୁ—
(ତମହେଁ କାଳି ଲଟି ଗ୍ଳାନଗଲେ)

---

## ୫ମ ଦୃଶ୍ୟ

(ସୁନପୁର ଗାଁର ଗଳିଢ଼ଦାଣ । ଦେବେଶ୍ୱରୀ ଦୁଆରେ ବସି ବାଟ ଚାହିଁଛନ୍ତି; କନକ—ଦେବେଶ୍ୱରୀଙ୍କ ଝିଅ କୁନ୍ତଳାକୁ କୋଳରେ ଖେଳାଇବାରେ ଲାଗିଛନ୍ତି ।)

କନକ—(କୁନ୍ତଳାଟିକୁ କୋଳରେ ଧରି ଗାଉଛି)

ନୂଆ ଖଣ୍ଡଖଣ୍ଡି ଲୁଗା ଗଣ୍ଠି ଲୋ ଶରଧା
ତୋତେ ନେଇଯିବେ କନିଆଁ ଗଡ଼ି ଲୋ ଶରଧା
ସେ ଗଡ଼ି ଲାଗିଛି ଅତି ଗହନ ଲୋ ଶରଧା
ବାପଘର ଆଉ ନ କର ମନ ଲୋ ଶରଧା
ତୋହର ଜୁଆଁସୁଣୀ ଓଢ଼ଣୀ ଦବୁ ଲୋ ଶରଧା
ଶାଶୁ ଟୋଗାଡ଼ିଆଟେଳ ଓଲଟି ହବୁ ଲୋ ଶରଧା
ଡେଢ଼େଲିଆ ନଣନ୍ଦ ଦେଖି ବଠୋଲି ଲୋ ଶରଧା
ତା ମନ ମନାଇ ଯିବୁ ତୁ ଚଳି ଲୋ ଶରଧା
ଠାକୁରାଣୀ ପଣ ତୁ କରିବୁ ନାହିଁ ଲୋ ଶରଧା
ସୁଖ ଦୁଃଖ ସବୁ ଯିବୁ ସହି ଲୋ ଶରଧା
ଦେଢ଼ଶୁର ଘର ଜଗିଥିବୁଟି ଲୋ ଶରଧା

ଦେବେଶ୍ୱରୀ—(ଡାକିଲେ) କନକ ! ତୋର ଅବା ଦେଖିଲୁ ନାହିଁ,
ମିଳିଛିଟି ଧାଣ୍ଡ ଦୁଆରେ ବସି—

କନକ—ନାଇଁ ଲୋ ମାଆ, ହଁଅଣ୍ଟା ଧର ଯିବ ସ୍ୱାମୀଙ୍କ ନାଲଧାଁ ଟିକିଏ ନଦେଇ ଦେଇଥିଲି ଯେ—ମଲ୍ଲୀକି ଫୁଲ ଛଡ଼େଇ ଦେଇ ଯାଉଛି।

ବେହେରାଣୀ—ମୁହିଁ ହୋଉଛିଲେ ତୋ ହଁଅର, ଏତେ ଘର ଗୋଠାଙ୍କର କାମ ପଡ଼ିଛି କି! ସେଇଁ ପୁଅ ପେଟ ଉପରେ କବଟାଖଣ୍ଡ ଦେଇ ଶୁଆଇ ପକେଇଥିଲି, ଗଲୁ ଦେଖିବୁ, ଉଠେଇ କି ନାଇଁ?

କନକ—ଯାଉଛି, ଯାଉଛି, ( କୁଣ୍ଢାଇକୁ ଧରି ଉଠିଲା ) ଗୁଆଲ ଲୋ ଖରଧ! ଅଇ ଗାଳିଦେଲଣି ପରା! ତୁ ଆଜ ଅଇଁଠପଣ କରନା।

( ପଦାଖଣ୍ଡା ହାତରେ ଧରି ଘର ଭିତରୁ ଆସୁଛି ବେହେରା—ଏଣେ ତେଣେ ଗୁହିଁ ବେହେରାଣୀର ଉପରରେ। କନକ ସେଇବାଟେ ଘର ଭିତରକୁ ପଶିଯିବାବେଳକୁ ଅଧବାଟିଆରେ ବାପକୁ ଦେଖିଲା)

କନକ—ବାପା! କଜଳୀଠାକୁ—

ଗରୁଡ଼—( କନକ ମୁହଁରେ ହାତ ଦେଇ ଚୁପ କରାଇ ) ଚୁପକର! ଦେଖୁଛି ନଇଲେ ଏଇନେ (ହାତ ଉଠେଇଲା)

କନକ—(କାନ୍ଦଉଠି) ମାଆଲୋ!

ବେହେରାଣୀ—( ଟୁଆବାଡ଼ି ସହିତ ଦୌଡ଼ି ଆସିଲା କହୁ କହୁ ) କଅଣ ଲୋ କନକ! କଣ ହେଲା? ( ଦେଖିଲା ବେହେରାଙ୍କୁ ଗାଈ ବାନ୍ଧ ଆଣୁଛି, ଚିଡ଼ିଗଲା) ଉଇଁକଲା ପେଟର? (ଟୁଆବାଡ଼ିଠାକୁ ଡାହାଣ ହାତକୁ ବଦଳେଇ) ଧରବୁଝି ଲୋ କନକ, ଟୁଆଠାକୁ (ଭିତରକୁ ଫିଙ୍ଗି ପଦାରୁ ଗାଈଠାକୁ ଫିଟେଇ ଦେଇ) ଏଥର ପଦାଠାକୁ ନେଇଯା—ମନ ଯେବେ ହଉଛି ପଦାକୁ ବଳ। ନଇଲେ ପଦାରେ ଦଉଡ଼ି ଦେ। କାଲଠଉଁ ସେଇ ରେଣ୍ଟି ଧରି

ବେହେରାଣୀ—ମରିଗଲି ଲୋ ମାଆ—ମାରି ପକେଇଲେ ଲୋ ବୋପା
(ଝୀଅ କାନ୍ଦ ଉଠିଲା)

ଦାମା—(ଆସି ପହଞ୍ଚି) ଅରେ, ଅରେ, କଅଣ ଲୋ ବେହେରାଣୀ ? କଅଣରେ ପବନା ଏ ଗୋଲମାଳ ?
( ବେହେରାଣୀ ଉଠି ବସିଲା ପବନା ବେହେରା ଆସି ପହଞ୍ଚିଲା )

ବେହେରା—କି ପାଇବ ତୁମେ ସେଥିରୁ ପିଅଦା ବାବୁ, ସେ ଆମ ଘ'ଘରଣୀର କଜିଆ । ତେବେ ତମ କାମରେ ଯା, ସେ କିଛି ନୁହଁ ।

ବେହେରାଣୀ—କିଛି ନୁହଁ ? ତେବେ ନିଶାପ କରିବଟି ପିଅଦା ପୁଅ ! ଘରେ ଖାଇବାକୁ ନାହିଁ । ଏ ବୋଇଲା ଦୁହାଁନ ଗାଈଟିକୁ ବିକିବ ଯେ ମୋର ତ କଅଁଳା ପୁଅଟି । ଭଲ କ୍ଷୀର ଟୋପାଏ ନ ହେଲେ ବଞ୍ଚିବ କେମିତ ?

ଦାମା—ଏତ ଯୁକ୍ତ କଥା, କରେ ପବନା ?

ବେହେରା—ସବୁ ଯେ, ଗାଈଟିକି ଖୁଆଇବ କଅଣ ? କୁଣ୍ଡା କୁଟୁଟା ମାଗେ ହେଲେ ତ ! ପାଇବ କୋଉଠୁ ?

ଦାମା—ସତକଥା । କିଲୋ ବେହେରାଣୀ । ପବନା ତ ସତ କହୁଚି ?

ବେହେରାଣୀ—କାହିଁକି ବଳଦ ଯଦି ଅଛୁ । ହାଙ୍ଗ ପଟଳ ମରିଗଲା । ପଟିକିଅଟେ ଥାଇ କଅଣ କରିବ ? ଗାଈକି ବିକି କଂସେଇଠୁ ଟଙ୍କା ଆଣିଲେ ତାକୁ ଏଇନେ—

ଦାମା—ସତକଥା, କେଇଟା ବା ଟଙ୍କା ହେବ ?

ବେହେରା—ଆହେ ବାବୁ, ତେବେ ନିଶାପ କଲ । ବଳଦଟି ଏ ଅଛି, ତାହା ଯାଙ୍କେ ହେଲେ ଭାଗୁଆକୁ ଭୁଇଁ ମାଗେଣି ଦେଣ ଦେଲେ ଅଇଦାକୁ ଖେଦ କରିବ । ସେଇଟି ଗାଲିତ ଏବୁ ସବୁ ।

ଦାମା—ସତକଥା, ହଁ କୁହେଁ କଅଣ ?

ବେହେରାଣୀ—ମୋକଥା ଶୁଣ ଗାଈଟି ବିକଲେ ତ କ୍ଷୀର ଚୋପାଏ ଅଜ ସିନା ନାହିଁ । ଅମର ବେହେରା ଘର । ଗୃହାଲ ଲକ୍ଷ୍ମୀ ଗଲେ ଅଜ ରହିଲା କଅଣ ? କହୁନା—ତୋଣ୍ଡ କି ଜାଣୁ ଜାଣୁ ଗାଈଟାକୁ ହାଣ ମୁହଁକୁ ଦବା ?

ଦାମା—ଆହା ହା, ଗୋମାତା ଟି ସେ ।

ବେହେରା—ଅଜ ପେଟ ପୋଡ଼ିଗଲେ ଗୋମାତା । ଜମିଦାରତ ଏତେ ପଇସାବାଲା ସେ ନକ୍ଷନାହାନ୍ତି, ଗାଈ ଗୋରୁ ସବୁ କିଣି ନିଅନ୍ତୁ ଫେରେ ଭଲ ବେଳ ହେଲେ ଅମେ ତାଙ୍କ ଧନ ତାଙ୍କୁ ଦେଇ ଗାଈ ଗୋରୁ ନେଇ ଅସିବୁ ।

ଦାମା—ସେ ନେଇ ଏତେ ଗୋରୁ ଗାଈ କଣ ବେପାର କରିବେ ?

ବେହେରା—କାହିଁକି ? କ୍ଷୀର ଖାଆନ୍ତୁ, ଗୃହ କରନ୍ତୁ, ଯାହା ମନ ତାଙ୍କର ।

ଦାମା—ହଉ, ବୁଝିବା, ବୁଝିବା, ବେହେରାଣୀ । ଟିକା ଧ୍ୟାନ କରେଇ ଦେବ । ତୁ ଯା ପଦନା । ଗାଈ ଏଇନେ ଧିବନା—ଯା, ଭୂଅଁ ବଳେଇ ଦେବେ ମୁହଁକୁ ମୁହଁ ଦେଇ ଜୁଆ ଟୋକା ହଜିଥିବ ଏଇଠୁ ଥାଇ—ଯା, ମୁଁ ସାଅନ୍ତଙ୍କୁ କହି ତଟେ ଲୁଛି ଧ୍ୟାନ କରେଇ ଦେବ ।

ବେହେରାଣୀ—ଶୁଣିଲ, ଶୁଣିଲ ? ବୋଇଲା ଗାଈ ବିକିବ !

ବେହେରା—ସେତକ ଫେର ହେଲେ ତ ?

ଦାମା—ହଁ, ତୁ ଗଲୁ, ଯାଲେ ଝିଅ ! ଘରକୁ ଯା ।

ବେହେରା—ହଉ, ଦା ଧନ ତହାଁ ତମ କଥାରେ । ଅଲୋ ଚଳକ, (ଦୁହେଁ ଗଲେ) ।

ଦାମା—ହଇଲେ ! ବେହେରାଣୀ ! ସାନବାବୁ ଫେର୍ କଅଣ—

ଦେବେନ୍ଦ୍ରଗୃହିଣୀ—ମଲ, କି ମୋହିନୀ ଲଗେଇଛି ସେ ଟୋକାଗଣ୍ଡକୁ ତାଙ୍କୁ ! ଏଡ଼େ ବଡ଼ ଘର ଝିଅ, ବୋପା ତାର ଭଣ୍ଡ ବୋଲି, ଧନ ନାହିଁ, ଗୁଣ ନାହିଁ ଏଇ ବାଟେ ଡ ଦେଖୁଛ, ବେଗେଇଛି ଆଜି ସତର ଥର ହବ—

ଦାସୀ—ତୁନି ହ, ତୁନି ହ, ଇଆଡ଼କୁ ଆ, ତୁ ଧାନ କି ଟଙ୍କାପାଇଁ ଭାବ ନା, ଏଣିକି ଆ, କହୁଛି ।

( ଦୁହେଁ ଚାଲିଗଲେ )

---

## ସପ୍ତମ ଦୃଶ୍ୟ

( ଜଣେ ଭିକାରି ଗୀତ ଗାଇ ଗାଇ ଯାଉଛି )

ଗୀତ

ରବ ତୁଇଁଲ ଆସି କାନ୍ଦି ଡାଳକୁ
ହସ କାନ୍ଦକୁ ଦେଇ ପୋଲକୁ ।
ଜାଳିବାକୁ ନାହିଁ କାହା ଘରେ ସଞ୍ଜବତୀ,
ଖାଇବାକୁ ମିଳୁ ନାହିଁ ଟୁଦ ପେଜ ପଲତା,
କିଏ ସେ କାହାଘରେ—ଆଖିରୁ ଲୁହ ଝରେ
ଛୁଆ ମୁହଁରୁ କାଟି, ମାଆ ତା ପେଟ ପାଳେ
ହସି କେ ପାଉଛି ଦବାଲିକୁ । ୧ ।
ପାଟ ପୀତାମ୍ବର କଏ ପିନ୍ଧୁଛି ଅସୁମାର,
ଗଇଁଠା ବଟା ଖଣ୍ଡେ ପେଣ୍ଡିଲଗା କାହାର,
ମୁଣ୍ଡଝାଳ ତୁଣ୍ଡରେ ମାର, କେ ଧନ ସାଟେର,
ଗଡ଼େ ଜଣେ କେ ବସି, କଏସେ ଘର କରେ
ଦୁନିଆଁରେ ଲଟିଛି ଦେଲକୁ । ୨ ।

( ଗାଇ ଗାଇ ଚାଲିଗଲା )

# ଅଷ୍ଟମ ଦୃଶ୍ୟ

( ରଘୁଦାସର ଘର )

[ଖଟିଏ ଖଟିଆ ଉପରେ ଶୋଇଛି ରୋଗୀ ରଘୁଦାସ, ଘରର ଗୋଟିଏ କଣରେ ଜଳୁଛି ଧୀରେ ଧୀରେ ଗୋଟିଏ ଦେଶୀ ଲଣ୍ଠନ। ମୁଣ୍ଡ ଉପର ଅଡ଼କୁ, ଟିକିଏ ଦୂରଛଡ଼ା ହୋଇ, ଖଣ୍ଡିଏ ଅପରିଷ୍କାର ପୁରୁଣା ଟୁଲ। ଲୁହ ଆଖିରେ ରମା ଦୀପଟିଏ ପାଖରେ ବସି, ପଢ଼ୁଛି ଭାଗବତ ଦଶମ ସ୍କନ୍ଧ। ଡାକ୍ତର ରୋଗୀର ନାଡ଼ି ଦେଖୁଛନ୍ତି। ଜମ୍ବୁ ଉଦ୍‌ବିଗ୍ନ ଦୃଷ୍ଟିରେ ଚାହିଁ ରହିଛନ୍ତି ରୋଗୀକି ଓ ଡାକ୍ତରର ମୁଖ-ଭଙ୍ଗୀକି ଏବଂ ବେଳେ ବେଳେ ରମା ଅଡ଼କୁ ]

ଜମ୍ବୁ—( ଢେଢେ ବେଳପରେ ଡାକ୍ତରଙ୍କୁ ପଚାରିଲେ) କେମିତି—?

ଡାକ୍ତର—( ନାଡ଼ି ଛାଡ଼ି ଠିଆହେଲେ। କିଛି ଉତ୍ତର ନ ଦେଇ ଚାହିଁଲେ ରମା ଅଡ଼କୁ)।

ଜମ୍ବୁ—ରମା, ପାଣିମଗାଏ, ଡାକ୍ତର ବାବୁ ହାତ ଧୋଇବେ!
( ରମା ଉଭୟଙ୍କ ମୁହଁକୁ ଚାହିଁ ଚାଲିଗଲା )

ଡାକ୍ତର—( ଦୀର୍ଘ ନିଃଶ୍ୱାସ ମାରି ) No hope, Nearing goal.

ରମା—( ବାହାରୁ ଡାକିଲା ) ପାଣି।

ଡାକ୍ତର—ହୁଁ (ଭିତରକୁ ଯାଇ ହାତ ଧୋଇ ଆସି)—ତା ହେଲେ ଜମ୍ବୁବାବୁ—

ଜମ୍ବୁ—( ଦୀର୍ଘ ନିଃଶ୍ୱାସ ପକାଇ ) ହଁ, ନମସ୍କାର! (ସଙ୍ଗରେ ଗଲେ, ଟିକେ ସମୟ ପରେ ଫେରିଆସି ଟୁଲରେ ବସିଲେ ଗମ୍ଭୀର ହୋଇ )।

( ରମା ଅଗତ୍ୟା କାନରେ ହାତ ଘୋଟି ଘୋଟି ଆସିଲେ, ଆଖି ଲୁହଭରରେ ପାଣି ପଡ଼ୁଛି; ଟିକଏ ଛୁଡ଼ା ହୋଇ ଜୟୀର ଅବସ୍ଥା ଲକ୍ଷ୍ୟ କରି କହୁଲେ )

ରମା—ଡାକ୍ତର ବାବୁ କଅଣ କହୁଲେ ?

ଜୟୀ—( କିଛି ଶୁଣି ନ ପାରିବା ପରି ଗାରିବ )

ରମା— ବାପାଙ୍କ ଦେହ ଭଲ ହୋଇଯିବଟି ?

ଜୟୀ—( ଚେତନା ଲଭି କହୁଥର ) ହଁ, ତୁମେ, ଭାଗବତ ପଢ଼ ।

ରମା—( ପୁଣି ପଢ଼ିଲା )

ରଘୁ—( ବ୍ୟସ୍ତହୋଇ ) ରମା, ଓଃ, ଓଃ, ପାଣି ଟିକଏ—

ରମା—( ଧଡ଼ପଡ଼ ହୋଇ ଉଠିଗଲା ପାଣି ଅଣିବାକୁ )

ଜୟୀ—( ଉଠିଯାଇ ରଘୁନାଥର ଛାତିରେ ହାତ ରଖି ଅଉଁସିଲେ )

ରଘୁ—ସାନବାବୁ ! ଦେବତା ! ବହୁତ କଲେ ଗରିବଟା ପାଇଁ । ଯମ ପାଖେ,ଏତେଣ ଅଗଣ ପାଖେ । ବାକ ଦୈବ ତ ବଡ଼ଲୋକ । ମୁଁ ଗୁଲିଲି ସାନବାବୁ ! ଓଃ, ଭାରି ଶୋଷ । (ଛାତି ଚିପି ଧରିଲା)

ରମା—( ପାଣି ନେଇ ଆସି ଚମକିଲା ପରି ହେଲା । ପାଣି ବଢ଼ାଇ ଦେଇ ଡାକିଲା ) ବାପା !

ରଘୁ—ଦେ, ଦେ, ( ହାତ ବଢ଼ାଇଲା ) ( ରମା ପାଣି ଅଣ୍ଟ ପିଆଇ ଦେଲା ) ଓଃ, ଏଇ ସବୁ ଆସି ଗଲେଣି—

( ଜମିଦାର ଓ ଦାମା ଆସିଲେ, ଦାମା ଜମିଦାରଙ୍କୁ ଠାରି ଦେଖାଇ ଦେଲା ଜୟୀଙ୍କୁ, ଜମିଦାର ବିରକ୍ତ ହୋଇ ଘେର ଗୁଲିଗଲେ)

ରଘୁ—ମୁଁ ଯିବି,—ବାକି ରମା—

ରମା—( କାନ୍ଦ ଉଠି ରଘୁଛାତିରେ ପଡ଼ିଗଲା ଚିତ୍କାର କରି ଡାକି) ବାପା !

ବନ୍ଧୁ— ( ହାତରେ ରମା ମୁଣ୍ଡ ଅଉଁସି ) ଭାବନା । ସାନବାବୁ !
କିଅନ୍ତାରେ ବହୁତ କଲ ! ବାବୁ ! ବାକି ଗୋଟେ ଶାନ୍ତା—
ନିଶ୍ଚିନ୍ତ ହୋଇ ମର ପାରୁ ନାହିଁ, ଏଇ ରମା—ଏଇ ରମା—

ରମା—( ପୁଣି କାନ୍ଦ ଉଠିଲା ) ବାପା—

ବନ୍ଧୁ—କେହୁ ନାହିଁ, ଅପେକ୍ଷା । ରମା ଲାଗିଲା । ସାନ ବାବୁ !
ସାନ ବାବୁ ! ରମା ! ରମା !

(ଦୁହିଙ୍କ ହାତ ମିଶାଇଦେଲା, ତା ପରେ ସବୁ ଶେଷ)

(ରମା କାନ୍ଦ କାନ୍ଦ କରୁଣ ହୋଇ ପଡ଼ିଲା ବାପା ଛାତରେ)

କସ୍ତୁରୀ— (ରମାକୁ ଟିକିଏ ଉଠାଇ ଦୂଆଳ ଦେଇ, ରଦ୍ଦୋସ ମୁହଁରେ
ଲୁଗା ଢାଙ୍କିଦେଲେ) (ରମାର ହାତ ଧରି) ରମା—

—ନିଷ୍କ୍ରାନ୍ତ—

---

# ତୃତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

[ଗ୍ରାମପଥର ଆଗରେ ଟେଙ୍କ ଗୋଟି କେତେ, କୁମାର ପୂର୍ଣ୍ଣିମାର ଉସ ଗୁନ୍ଦନା ତଳେ ଗାଆଁର ପିଲାମାନେ—ପୁଅଝିଅ ମିଶି ପୁଚି ଖେଳୁଥିଲେ, ଗୀତ ଗାଉଥିଲେ, ନାନା ଆମୋଦ ପ୍ରମୋଦରେ ମତ୍ତ]

### ଗୀତ

କୁଆଁର ପୁନେଇଁ ଜହ୍ନ ଲୋ, ଫୁଲ ବଉଳବେଣୀ,
କୁମାର କୁମାରୀ ହସ ଭଙ୍ଗୁରେ ବଡ ମଣୁଥାଉଁ ଧନ ଗୋ (ଫୁଲ)
ଗଜୁରିଲା ତାଳ ଗଛ ଲୋ, ଫୁଲ ବଉଳବେଣୀ
ଟୋକାହୁ ଭାବହୀ ଶ୍ରୀ ସଜାଡ଼ି ପାଚିଲା କଣି ଅଣ୍ଟଥିଲେ ଅଜା ଲୋ (ଫୁଲ)

ବଉଳ ଗଛର ଗୁଞ୍ଜ ଗୋ, ଫୁଲ ବଉଳବେଣୀ
ଏଡ଼ର ଗଛରେ ପୁନ୍ନଅଁ ଗୁନ୍ଦାଟି ଲୁଚକାଳି ଖେଳୁଥାଇ ଗୋ (ଫୁଲ)
ଯମୁନା କୂଳେ ଭାଲିଆ ଗୋ, ଫୁଲ ବଉଳବେଣୀ
'ରାଧା, ରାଧା' ବୋଲି ବଇଁଶୀ ବଜାଏ ଗହଳ ଫୁଲମାଳିଆ ଗୋ (ଫୁଲ)
ଧୋବ ଫରଫର ଇନ୍ଦ୍ର ଗୋ, ଫୁଲ ବଉଳବେଣୀ
ରାଧା ଗୋଟିଏ ମନ ଘରେ କି ରହୁଛ, କି ଦେଖି ଚନ୍ଦ୍ରାବଦନ ଗୋ,
ଫୁଲ ବଉଳବେଣୀ,

( ପିଲାଏ ଖେଳି ଖେଳି ଚାଲିଗଲେ )

( ରମା ଆଉ ସାବି କଥାବାର୍ତ୍ତା ହୋଇ ଆସିଲେ )

ସାବି—ମୁଁ ସବୁ ଜାଣିଛି ଯେ—

ରମା—ଯୋଗ ଏମିତି ପଡ଼ିଲା ଯେ, ତାଙ୍କ ଅଖଣ୍ଡ ଛୁଡ଼ା ଆଉ ଗତି ନାହିଁ, କେତେ ଗାଁ ଲୋକଙ୍କ ନାକଟେକା, ଅଭିମାନ, ହାପରା, ଚାହୁଁଲି—ଏ ତ ଦେହର ମଳି ହୋଇଛି ।

ସାବି—ହଁ, ବଡ଼ଲୋକ ତ ସେ, ତାଙ୍କୁ ପଦେ କହିବ—କାହାରର ହାତ ଅଛି କାହାର ? ନୁଆଁଣିଆଁ ପାଣି ତ କୋର ।

ରମା—ସାବିଲୋ ! ବାଘ ଗଲେ, ମୁଁ ନାଇଁ ଲଗାଇବା ହେଲେ ଅଗରୁ ଯାଇଥାନ୍ତି ।

ସାବି—ମଲ, ମାଇପି ଜନମଟି । ମଲ, ତୁ ତ ଆଗରୁ ଯାଇଥାନ୍ତୁ, ଅଲୋ ଦଇଗଞ୍ଜି ତୁଅନ୍ତା କଏ ? ଗାଁବାଲା, ସାଇବାଲା ଏ ଡର ମୋର ନାହିଁ ଯେ—ମୁଁ ଡରୁଚି ଖାଲି ବଡ଼ଲୋକର ମନକୁ, କେତେବେଳେ କୋଉ କଥା ଥାଏ, ନାଇଁ ନାଇଁ କଥା ଯେତେବ, କେତେର ମନ ହୋଇଯିବ—

ରମା—ତାଙ୍କ ଧର୍ମ, ମୋର ବାକି ବାହୁଁକି ଜାଣିଚି—

ସାବ—ସାନବାବୁ ସେତିକି ନୁହଁ ଯେ, ଏଇ ବଡ଼ବାବୁଙ୍କ କଥା (ହାତ ଦେଖି) ଅଲେ, ମୁଦାଟା କଅଣ ଭଲ ? ନାଇ ନାଉଁ ତ ?

ରମା—ତୁମକୁ ତ ମୁଣ୍ଡ ଟେକି ହଉ ନାହିଁ ଲେ, ଅଉ ମୁଦା ନାଇଲେ ଫେରେ—

ସାବ—କି ପାଇବୁ ଲୋ ଲୋକଙ୍କ କଥାରୁ ? କିଏ ଦିନେରେ ଦେଖିବ କି ତୋର ? ଲୋକ ତାଙ୍କ ଘରେ ପାଟି କରୁଥାନ୍ତୁ, କଅଣ କହନ୍ତି ନାହିଁ "ଅଚିହ୍ନିତ ମଡ଼ା ନାଁ, ଦୁଆରେ ପଡ଼ିଛି ନେଉଛ" ପଛରେ କିଏ ତାଙ୍କୁ ? ତୋର ସାଙ୍ଗରେ ହେଲ-ମେଳ ହବାରୁ ମୋତେ ଏବେ କେତେ ଲୋକ କେତେ କଥା କହୁଛନ୍ତି, କହନ୍ତୁ ।

ରମା—ସାବ, ମୁଁ ତ ବୁଝୁଛି, ତୁ ଅଉ ମୋ ସାଙ୍ଗରେ—ଯା, ଯା, ଫେର୍ ଯେବେ ଦେଖେ କିଏ ଦେଖିବ—

ସାବ—(ଦୂରକୁ ଅନାଇଁ) ରମାଲୋ, ଆସିଲେଣି !

ରମା—ହଁଲୋ, ଗୁଲେ, ଗୁଲେ (ଗୁଲ ଯାଉଥିଲେ)

କନକ—(ଆସି) ଆଲୋ ହେ ରମାନାନୀ, ସାବନାନୀ, କାଲୋ କୁଆଡ଼େ ଗୁଲ ଯାଉଚ ? (ଦୁହିଁଙ୍କି ଟାଣି) ଆସ ତମେ ଦୁହେଁ ଦୋଳରେ ବସ୍‌କି—ମୁଁ ଘଣ୍ଟ ଦେଇବ । କୁଆଡ଼େ ଗଲ ଲୋ ସବୁ—(ଅନ୍ୟ ଖେଳ ସଙ୍ଗୀମାନଙ୍କୁ ଗୁହିଁଲ)

ରମା—ମୋର ପର କେତେ କାମ ଅଛି ଦେଖେ—

କନକ—ଟିକିଏ ଖେଳିକରି ଯା, କୁଆଁର ପୁନେଇଁଟା—

ସାବ—ତେମେ ସବୁ ଡାକ୍‌ବୁଢ଼ୀ ହେଇ ଖେଳୁଥା, ଆମେ ଏଇନେ ଆସୁ ନାଉଁକି ?

(ଦୁହେଁ ତରତର ହୋଇ ଗୁଲଗଲେ)

ଜନକ—ଅସିବ, ଏଡା, ମୋଗଣ; ବେଗେ ।
ରମା—( ଅନ୍ତରାଳରୁ ) ହଁ, ହଁ ।
( ପିଲାମାନେ ଖେଳଲେ )
ଦାମା—(ଅସି ଜଣି) ଏଠି ତ କେହି ନାହାନ୍ତି,
ଜନକ—ମଲ୍ଲ, ହେମ, ମାୟା, ଧଡ଼ଆ, ଅନନ୍ତ, ବାସନ୍ତୀ, ଅଟମ
ସମସ୍ତେ—ଅଛୁଁ; କହୁଚ କଣ ନା କେହି ନାହାନ୍ତି !
ଦାମା—(ବଡକ୍ତ ମୁହଁରେ ମୁଣ୍ଡ ହଲାଇ ଗୃହ୍ ଯାଉ ଯାଉ)—ଇଁ ହୁଁ ଃ
ଜନକ—(ଗୃହଁ ରହିଲ) (କିଛି ବୁଝି ନ ପାର ଖଡେଇ ହୋଇ) ଇଁ ହୁଁ ଃ
( ସବୁ ପିଲାମାନେ ହସିଲେ )

---

## ଦ୍ୱିତୀୟ ଦୃଶ୍ୟ

[ ଅନନ୍ତ ଓ କେତେକ ପ୍ରଜା ଗାଁ ଦାଣ୍ଡରେ କଥା ହେଉଥିଲେ ]
ଅନନ୍ତ—ପରସ୍ପରକୁ ସାହାଯ୍ୟ ନ କଲେ ଚଳିବ କପରି ?
ପ୍ରଜା—ଲୋକେ ସେଥିପାଇଁ ରାଜା ଅଛନ୍ତି, ଆପଣ ତ ବାଟ ଦେଖାଇ ଦେଇଛନ୍ତି, ବି.ଏ. ପାଶ କରିଛନ୍ତି, ଗୃହକର ବାହାର କରିଥିଲେ ଚୌକିରେ ଥାନ୍ତେ, ଏଠି ଆମ ଗରିବଙ୍କ ପାଇଁ ମୁଣ୍ଡ ଖାଲ ତୁଣ୍ଡରେ ମାରି, କୋଉଁଠି ଗାଁର ଦଳ କଢ଼ାଇବ, କୋଉଁଠି ଗାଁର ଜମି ଜମିତ ଗୃଷ ହବ, ଏଇ ସବୁ କରି ଆମ ଆଖି ଫିଟାଇ ଦେଇଛନ୍ତି, ଆମକୁ ତ ଲାଗୁଛି, ଆପଣ ମଣିଷ ନୁହନ୍ତି ଦେବତା ।

ଅନନ୍ତ—ମିଛରେ ମୋର ପ୍ରଶଂସା କରୁଛ କାହିଁକି ? ସ୍ୱାମୀଜି ନ ଥିଲେ ମୁଁ ଜଣେ ଲୋକ, କିଛି କରି ପାରିଥାନ୍ତି ? ସମସ୍ତେ କାନ୍ଧ

ଦେଲକୁ ସିନା ? ଅନେକ ଭାମ ଅନ୍ତୁର ଭରିବାକୁ ଅଛି, ମନ ହେଲେ ଭରି ହୁଏଟି ବା କେଉଁଠି ?

ଝୁନା—ସବୁଥିକି ତ ଅଛେଇ ମଉସା, ଲଢ଼ ମଉସା ! ସବ ଗ୍ଲାଣିଲ ବେଳକୁ ଜମିଦାର—ଜର ଡେଭ ଦେଇ ଆମେ ମନ୍ତ୍ର ପଢ଼ୁଛେ, ଧୋଇ ମନ୍ତୁଡ଼ି ଯାହା ହେବ, ତାଙ୍କର କାଣି କଉଡ଼ିଟାଏ ହାନି ନ ହୁଏ ।

ଅନନ୍ତ—ମୁଁ ତ ଯାଉଛି ଅଜା । ସ୍ୱାମୀଜୀଙ୍କ ସେବାସଦନ ଲଗି ଗୁହାରି ଯାହା ଯେମିତି ଅଦାୟ ହେଉଛି, ମୁଁ ଜମିଦାରଙ୍କୁ ଥରେ ଏ ବିଷୟ କହିବି ; ଦେଖେଁ ସେ ଯଦି କିଛି ଦଅନ୍ତି । ମୋର ଡେରି ହୋଇଯିବ, ମୁଁ ଯାଏଁ—

ଝୁନା—ହଁ, ଆଉ ଗୋଟିଏ ଖବର ଶୁଣିଥିବେ ତ ? ଜମିଦାରଙ୍କ ପୁଅ ବାହାଘର ଯେ ତହସିଲଦାର ଶ୍ରେଣୀକୁ ଦେଇ ଗଲେଣି, ଘର ପିଛା ଗୁହାରି, ମାଗଣ ।

ଅନନ୍ତ—ଜମିଦାରଙ୍କ ପୁଅ ବାହାଘର ? କଅଣ, ଜମ୍ବୁରି ?

ଝୁନା—ବାବୁ, ସେ କଥା ଆମେ କି ଜାଣୁ ? ଜମିଦାରଙ୍କ ପୁଅ କିଏ—କେତୋଟି, ବା କିମିତି, ସେ କଥା ଆମେ ଜାଣିଲୁ କହିବୁ ? ପ୍ରଜାଏ ତ ଜମିଦାରଙ୍କୁ ଦେଖି ନାହାନ୍ତି । ଆଉ ଜମିଦାରଙ୍କ ପୁଅ ଖାଲି ଗୁହାରି ଦେଲା ବେଳକୁ ଜାଣୁ ଜମିଦାରଙ୍କ ବଂଶ ଅଛି ।

ଅନନ୍ତ—ଏ ଖବର ତ ମୁଁ ଜାଣି ନାହିଁ ? ଯା ଉଚିତ ଯେତେବେଳେ, ବୁଝିବି ।

ଝୁନା—ଖଜଣା ଗଣ୍ଡାକ ଦବାକୁ ବଳ ନାହିଁ ଆମର, ତା ଉପରେ ପୁଣି ଏ ଚାନ୍ଦା, ଭେଦା ! ଅନନ୍ତବାବୁ, ପେଟ ପୋଡ଼ିଗଲେ ଆଖି ଭଲମନ୍ଦ ବାଛି କରେ ନାହିଁଟି !

ଅନନ୍ତ—ଛି, ଛି, ଏ ଗୁଡ଼ାକ କଅଣ କହୁଚ ? ଯଦିବା ଏଇ ବାହାଘର କଥା ସତ ହୋଇଥାଏ, ଜମୀ ଶୁଣିଲେ, ଏଇ ବୁଢ଼ା ଭେଦା, ଅଦାୟ କରିବ ଦେବ ନାହିଁ । ମୁଁ ଯାଏଁ, ନବଲ୍ ଯାଉଚି ।

ଯୁଗା—ଯାନ୍ତୁ, ବାକି ଟେଟ ଭାତ ରହୁଛି, ତହସିଲଦାର ଯେମିତ ଜୁଲମ କରୁଛନ୍ତି !

ଅନନ୍ତ—ଅଁଛା, ସମ୍ଭାଳି ନିଅ ଟିକିଏ, ମୁଁ ଅସିବା ଯାଏଁ ।

(ଚାଲିଗଲା)

ଯୁଗା—କାଶ୍ମୀର ଅପି ମଟି ନଈରେ କଲଣି, ଅଜ ସମୁଳା ସମୁଳି କଥା !—ଟେଳଜାଣି ?

(କହୁ କହୁ ଚାଲିଗଲା)

---

## ତୃତୀୟ ଦୃଶ୍ୟ

[ ଜମିଦାରଙ୍କ କଚେରୀ ଘର, ଗୁମାସ୍ତା ହିସାବ ମିଳେଇ ବସିଛନ୍ତି । ଜମୀ ଗୋଟିଏ ଖାତା ଧରି ହିସାବ ତନଖି କରୁ କରୁ ନିହାତି ଅନ୍ୟମନସ୍କ ଭାବେ ଅଉ ଖଣ୍ଡେ କାଗଜ ଟାଣି ଲେଖୁଛି ]

(କବିତା)

ସେ ନହୁଲି ବୟସୀ          କାଖେରେ କଳସୀ
ଗତ ମନ୍ଥର ଭାବ,
କିଏ ଜାଣିଥିଲା          ପଡ଼ିଯିବ ଧରା
ଅଖି ସତେ ହେବ କାଳ । ୧ ।
କୋଇଲିଟା ପୁଟେ,          ବେଳ କାଳ ଜାଣି,
ଖଣ୍ଡା ଅମ୍ବ ଡାଳେ ଥାଇ,
କୁହୁ-କୁହୁ କହି          ଜଳଜଳ ଗୁହିଁ
କରଲା ଯୋଡ଼ଇ ଟାହି । ୨ ।

ବାଜିଲା ପବନ, ନ ହୋଇ ମରଣି;
ଏତକି ବେଳକୁ ଥିଲ,
ବାସ ରହୁଥିଲା ଭଗାବ ଅଖିରେ
ବସୁସ ଛାଡ଼ୁଥାଇଦେଲା । ୩ ।

ଗୁମାସ୍ତା—ଶ୍ରୀସଦାଶିବ ସାହୁ, ଶ୍ରୀସଦାଶିବ ସାହୁ, ଗତ ସନ ୫, ଏସନକୁ ୧୧, ମୋଟ ଜମା—ମୋଟ ଜମା ୧୬ । ଧଡ଼ି ଜେନା—ପିତା କୁଳମଣି ଜେନା, ଗତ ସନ ୩।/, ହାଲ ୫, ଗାଏ ୮।/ । ରସିକ ଶେଖର ଗ୍ରାମପଣ୍ଡା, ଗତ ୧୦୬, ହାଲ ୭।, ଗାଏ ଟ୧୭।୬ । ଶାମ ସାହୁ—ପିତା ଶ୍ୟାମ ସାହୁ, ଗତ ସନ ୧୨, ଏ ସନକୁ ୧୫, ଗାଏ ମୋଟ ୨୭ । ରମାଚରଣ ଦାସ, ରମା, ରମା, ରମା, ରମା ( ବନ୍ଧୁ ଭ୍ରମରଚନ୍ଦ୍ର—ଇସ୍ତୀର ଚେତନା ଆସିଲା, ସେ ଚମକି ଉଠିଲା ରମାର ନାଁ ଶୁଣି) ।

ଇସ୍ତୀ—ସେଇଟା କେତେ କହିଲ ବପିନ ?

ବପିନ—(ଖାତା ସହିତ ଉଠି) ଆଜ୍ଞା !

ଇସ୍ତୀ—ରମା ନାଆଁରେ ବାକି କେତେ ?

ବପିନ—ଦେଖନ୍ତୁ; ରମା, ରମା, ଗତ ଟ ୭୯ ଙ୍କା ହାଲ ଅଚ୍ଛେଇ ମୋଟ ଟ ୯୪ ।

ଇସ୍ତୀ—ଓଃ, ସେଇଟା ସେ ଦାଖଲ କରି ଦେଇ ଯାଇଚି ମୋ ପାଖେ ପଅରଦିନରୁ, ହୋଇଟି ନଅ ! ଅସୁଲ ଦେଇ, ଖାତାରୁ ରମା ନାଆଁଟା କାଟି ଦିଅ ।

( ଟଙ୍କା ବ୍ୟାଗରୁ ଦେବା )

ବପିନ—( ଟଙ୍କା ନେଇ ଖାତାରେ ଅସୁଲ ଦେଇ, ପୁଣି ଟିକେ ଅଟି ଇସ୍ତୀ ପାଖକୁ ) ଆଜ୍ଞା, ଦଅକ ଘରଟାରେ କାହା ନାଆଁଟା ପକାଇବ ?

ଇଯ୍ଯୀ—ଖୋଦ୍ ।
ବିପିନ—( ଜଯ୍ଯୀ ଅଙ୍ଗକୁ ହାତ ଦେଖାଇ ) ଖୋଦ୍ ?
ଇଯ୍ଯୀ—ଏଁ, ମୁଁ ? କହୁଲ ପରି ସେ ପଅରଦନ ମୋ ପାଖେ ଦେଇ
ଯାଇଚି ବୋଲି ।
ବିପିନ— ( ବେଳ କାଟି ବଢ଼ାଇଲା )
ଇଯ୍ଯୀ—ଓଃ ହଁ, ତୁମେ ରଖିଥଅ ନା। ( ବିରକ୍ତ ହେଲେ )
ବିପିନ—( ଗୁଲି ଯାଇ ରଖିଲା ).
ଜଯ୍ଯୀ—ହଁ, ପିଅଦା ଅସୁଲକୁ ଯେଉଁ ଡାଲକାଟା ଦଉଚ, ସେଥିରୁ
ରମା ନାଁଟା କଟା ହୋଇଥାଏ ଯେମିତ ।
ବିପିନ—ଆଜ୍ଞା ହଁ, ସେ ତ ପଇଠ ପଡ଼ିଗଲା, ଆଜ—
ଇଯ୍ଯୀ—( ଟୁଙ୍ଗବତ୍ ମୁହଁ ପୋଛ ) ହୁଁ
ବିପିନ—ହେଇଟି, ପାଉଡଟା ପରି ଫଡ଼ା ହୋଇଗଲା, ଚେକ୍ ସୋଇ୍
ବଢାଇ ଚୁକ୍ତି ।
ଜଯ୍ଯୀ—( ଅନ୍ୟମନସ୍କଭାବେ କଥାଟା ଶୁଣୁଥିଲେ, ଚମକି କହୁଲେ )
"ଚୁକ୍ତି" ?
ବିପିନ—ଆଜ୍ଞା ହଁ, ଟଗାଟେ ଚୁକ୍ତି ଯେତେବେଳେ—
ଜଯ୍ଯୀ—ଚୁକ୍ତି ହେଇଚି କଏ କହୁଲା ?
ବିପିନ—ଆପଣ ?
ଇଯ୍ଯୀ—( କଥାରେ ବାଧା ଦେଇ ) ମୁଁ, ମୁଁ, ଚୁକ୍ତି ହେବାର କଥା
କହୁଲି ? ମୋଠୁଁ ଶୁଣିଲ ତୁମେ ?
ବିପିନ—ନାଇଁ ଯେ, ଯାହା ଦବାର ପରି ସେ ଦେଇ ଦେଇଛନ୍ତି,
ଆପଣଙ୍କୁ ?
ଇଯ୍ଯୀ—ଚୁପ୍ କର, ମାଲିକ କଥାରେ ମୁଣ୍ଡ ଭୂଟକଇବା ପାଇଁ ତୁମକୁ
ଗୁକିରି ରଖାଯାଇ ନାହିଁ, ନିଜର କାମ ଦେଖ Nonsense.

ବିପିନ—( ଚାହିଁ କିଛି ବୁଝିଲ ନାହିଁ, କାମରେ ଲଗିଲ, ଟୂଂପର ପାଟିକର )

ଜସ୍ମୀ—( ତୀବ୍ର ଦୃଷ୍ଟିରେ ଗୁମାସ୍ତାଙ୍କୁ ଥରେ ଚାହିଁ ପୁଣି କବିତା ରଚନାରେ ଲଗିଲ, ସମସ୍ତ ଭାବଗୁଡ଼ା ତାର ଗୋଳମାଳ ହୋଇଗଲା ) ନାଃ ( ଉଠି ଚାଲିଯାଇ—ପୁଣି ଫେରଆସି ) ଏ ବିପିନ୍ ? ମୋଠି କିଛି କାମ ଅଛୁ ?

ବିପିନ—(ଚଟ୍ ଉଠି ଗୁଡ଼ାଏ ଚଳ୍ପଠିକାଏ କାଗଜ ଧରି) ଆଜ୍ଞା, ଏଇ—

ଜସ୍ମୀ—( ଚାହିଁଲ କାଗଜକୁ ) ଏଗୁଡ଼ା ଏବେ ଦସ୍ତଖତ୍ କରିବାକୁ ମୋର ବେଳ ନାହିଁ, ତମେ କରି ପଠେଇଦିଅ ।

( ଚାଲିଗଲେ )

ବିପିନ—(ଟେବ୍ଲ ପଡ଼ିଥିବା କାଗଜଗୁଡ଼ା ଉଠାଉ ଉଠାଇ) ନାଃ, ଏଠି ଚାକିର ଅତି ସହଜ ନୁହେଁ, ଦାନା ଉଠିଗଲାଣି ଆମର । ବଡ଼ବାବୁ କହୁଛନ୍ତି—ସାନବାବୁଙ୍କୁ ସଦାବେଳେ କାମରେ ପୂରେଇ ରଖ, ହୁକୁମନାମା ଭେଇକଣ୍ଟ ଦସ୍ତଖତ୍ କରେଇବାକୁ—କହୁଚନ୍ତି; ଏବେ ଦସ୍ତଖତ୍ କରିବାକୁ ମୋର ବେଳ ନାହିଁ, ତମେ କରି ପଠେଇ ଦିଅ । ହୁଁ; ବାହାରିଲେ ସେ ତାଙ୍କର ( ଅନ୍ୟମନସ୍କ ଭାବେ ସାନବାବୁ ମେଲେଇଥିବା ବହିଟାକୁ ବନ୍ଦ କଲା )

( ଜମିଦାର ଏତକବେଳେ ଅସିଛନ୍ତି ପଶି କଣଗୀକୁ )

ଜମିଦାର—କାହାର ? ଏଁ ?

ବିପିନ—( ବସିବାକୁ ଯାଉଁ ଯାଉଁ ଉଠି ) ନାଇଁ ଆମର ଏଇ—

ଜମିଦାର—ସାନବାବୁ ? ସାନବାବୁ କାହିଁ ?

ବିପିନ—ଏଇ ହୁକୁମନାମାଗୁଡ଼ା ଦସ୍ତଖତ୍ କରିବାକୁ ଥିଲା ଯେ—

ଜମିଦାର—କାହିଁକି ? ସାନବାବୁ କଲ ନାହିଁ ?

ବିପିନ—ସେ ତ ରୋଜନାମଚା ଦେଖୁଥିଲେ, ହଠାତ୍ କଟିଏ କାଗଜଗୁଡ଼ ଦସ୍ତଖତ୍ ନ କରି, କୁଅନ୍ତେ—

ଜମିଦାର—ବାହାରିଗଲେ, ନାଁ ?

ବିପିନ—( ନୀରବ )

ଜମିଦାର—( ବସି ) ନାଁ, ତୁମେ ଗୋଟିଏ ନିହାତ୍ ଅପଦାର୍ଥ । କହିଲି ତାଙ୍କୁ କାମରେ ବସେଇ ରଖ, ଏଇତକ ପାରିଲ ନାହିଁ, ଆଉ କଅଣ କରିବ ତୁମେ ? ଜମିଦାର ପଇସାରେ ପୁଅ ବାହାଘର, ଘରତୋଳା—ଏଇ ତୁମର କାମ, ନାଁ ? ଆଣ ସେ କାଗଜଗୁଡ଼ ।

ବିପିନ—( କାଗଜ ନେଇ ଦସ୍ତଖତ କରାଇଲେ )

ଜମିଦାର—( ଦସ୍ତଖତ କରୁ କରୁ ) ରୋଜନାମଚା କାହିଁ ?

ବିପିନ—( ଗୋଟେ ମୋଟା ବନ୍ଧା ଖାତା ଆଣି ତରତର କରି ଥୋଇଦେଲେ )

ଜମିଦାର—( ଖାତା ଖୋଲି ଦେଖନ୍ତି ଖଣ୍ଡିଏ କାଗଜରେ କବିତା ଲେଖା, ତାକୁ ପଢ଼ି ) ଏ କଅଣ ରୋଜନାମଚା ?

ବିପିନ—ଆଜ୍ଞା, ସାନବାବୁ ଲେଖନ୍ତି, ପ୍ରତିଦିନର ଏଇଟା ହିସାବ କିତାବ୍ ( କହି ଅନ୍ୟ କାଗଜ ଆଣିବାକୁ ଗଲେ )

ଜମିଦାର—( ଗମ୍ଭୀର ହୋଇ ) ହିଁ, ପ୍ରତିଦିନର ହିସାବ କିତାବ୍ ?

ବିପିନ—ଆଜ୍ଞା !

ଜମିଦାର—ଏଇ, ତା ହେଲେ ପ୍ରତିଦିନର ହିସାବ କିତାବ ନାଁ ?

ବିପିନ—ଆଜ୍ଞା ହଁ, ଅଜିକାଲ୍ ଟିକିଏ ସେମିତ ବେଶି ହଉଛି ।

ଜମିଦାର—ଏଁ ?

ବିପିନ—ଚାଳ ମହରଗ ନାଁ, ଖର୍ଚ୍ଚ ଟିକିଏ ଯିଆଦା ପଡୁଛି ।

ଜମିଦାର—( କାଗଜ ଦେଖାଇ ) ତେଣୁ ଏଇ ତମର ବୋଜନାମଚ୍ଚ !
( ଗୋଟିଏ ଧାଡ଼ି ପଢ଼ିଲେ )
ସେ ନଜୁଲ୍ ବସୂଶୀ କାଖରେ କଳସୀ ଗଡ ଯମୁନାର ତୀର,
କିଏ ଜାଣିଥିଲା ପଡ଼ିଯିବ ଧରା, ଅଖି ଯତେ ହେବ କାଳ ? ହୁଁ !
ବିପିନ—( ଚମକି ) ଆଜ୍ଞା ! ସେଇଠା ତ ମୁଁ ଦେଖି ନାହିଁ, ଦଅନ
ବାବୁ ତ ଆଜିକାଲି ଆଉ ହିସାବ ଲେଖନ୍ତି ନାହିଁ, ସାନବାବୁ
ବରବର ଏବେ—
ଜମିଦାର—ଠିକ୍, ତେଣୁ ଏଇ ଗୀତରେ ରୋଜନାମଚା ?—
ବିପିନ—ଆଜ୍ଞା ହୋଇଥିବ (ହସି), ସାନବାବୁ ତ ଆଉ ଦଅନ ବାବୁ
ନୁହନ୍ତି, ସେ କେଉଁ ପାଠୁଆ, ଗୁଡ଼ଏ ପୁସ୍ତକ ଗୁଡ଼େ,
ଗୀତରେ ଲେଖିଥିବେ, ଦଅନବାବୁ ଯେତେହେଲେ—
ଜମିଦାର—ଭୁଲ ହ, ସାନବାବୁ କୁଆଡ଼େ ଗଲା ?
ବିପିନ—ହଠାତ୍ ଛୁଟି—
ଜମିଦାର—ଗଲା କୋଉଁଠିକି ?
ବିପିନ—ଅନନ୍ତବାବୁ ଆସିଛନ୍ତି, ତାଙ୍କ ଆଡ଼େ ବୋଧହୁଏ—ମୋତେ
କହୁ କରି ଯାଆନ୍ତି ନାହିଁ ତ ?
ଜମିଦାର—ଅନନ୍ତ ଏଠିକି ଆସିଥିଲା ?
ବିପିନ—ନାହିଁ ତ ।
ଜମିଦାର—ତାହେଲେ ଦୁନିଆଁରେ ତମ ପରି ଅଜ ଗୋଟେ ମୂର୍ଖ—
ବିପିନ—ମୁଁ ଖୋଜିଆଣେ ଆଜ୍ଞା—
ଜମିଦାର—ଆଜ୍ଞା ନାଁ, ଦର୍କାର ନାହିଁ । ଦାମା କାହିଁ ?
ବିପିନ—ଦାମା, ଦାମା, ଅରେ ଦାମା, ସାଆନ୍ତେ ଡାକୁଛନ୍ତି; ଦାମା,
( ଡାକ ନ ଶୁଣିବାରୁ ଭୁଲ ହୋଇ ଜମିଦାରଙ୍କ ପଛପଟେ
ଦେଇ ଚାଲିଗଲା )

ଜମିଦାର—ନାଃ—
ବିପିନ—( ଫେର ) ନାଃ ( ଗୃହଅଡ଼େ ଗୃହ୍ନିଁଙ୍କ ବୋବାପର )

---

## ଚତୁର୍ଥ ଦୃଶ୍ୟ

ହରିପୁର ଗ୍ରାମ ପଥ

[ କଥା ହୋଇ ଆସୁଥିଲେ ରମା ଓ ସାବି ]

ସାବି—ହୁଁ, ବଡ଼ଲୋକର ମନକୁ, ନାଁ ? ଆଉ ତୋ ମନକୁ ଯିଏ ଗୃହ୍ନିଁ ଛୁ ତା କଥା ତ କହୁଲୁ ନାହିଁ ? ନୁଗୁଉର୍ ମୋତେ ? ତୋ ମନେ ମନେ ମୁଁ କିଛୁ ଦେଖି ନାହିଁ, ନାଁ ?

ରମା—ଦେଖିଚୁ ତ, ଆଉ ପଚ୍ଚାରୁଚୁ କେବେ କଅଣ ?

ସାବି—ସାଜବାବୁ ତ ଠଙ୍କା ଦେଇ ପଠେଇଥିଲେ, ତୁ ନେଲୁ ନାହୁଁ କାହିଁକି ? ଚଲାବୁ କେମିତି ? ମଜୁରୀ ତ ନାହାନ୍ତି ଯେ ଖୋଲବସର ଝିଅ ହବୁ ?

ରମା—ହଉଲେ ସାବି, ଠଙ୍କା କଅଣ ଏଡ଼େ ବଡ଼ ହେଲା ତୋ ଆଖିରେ ? ଆଉ—

ସାବି—ସଜ ଥିବ କି ଅସଜ ଥିବ, କାହିଁକି ଅବା ଆସି ପାର ନ ଥିବେ, ଏଇଥିକି ଏଡ଼େ ରୁଷା—

ରମା—ରୁଷା ! ମୁଁ ରୁଷିବି କାହା ଉପରେ ଲୋ ସାବି ?

ସାବି—ହଉ ହଉ, ଯାହା ତ କଲୁ କଲୁ, ଘରକୁ ଚାଲ୍ ।

ରମା—ନାଇଁ ଲୋ ସାବି, ମୁଁ ଯାଉଛୁ ଦେବୋହର ଘରକୁ ।

ସାବି—ବେଳବୁଡ଼ଟାରେ ପୁଣି ଦେବୋହର ଘରକୁ କାହିଁକି ଯିବୁ ମ ?

ରମା—ବେହେରାଘର ଧାନ ନେଇଥିଲି, ଗୁଡ଼ଲ କୁଠାକୁ ଯେ—

ସାବ—କୁଠାକୁ ତୁ ନେଇଥିଲୁ ଧାନ ? ମଉସା ଗଲଦିନୁଁ ତ ଚିନ୍ତାରେ ହାଡ଼ ମାଂଜିଷ ହୋଇ ଦପଲ ନାହିଁ ତୋଠି; ତୋ ଦେହରେ ବଳ କାହୁଁ ?

ରମା—ଅଛି, ପେଟ ଯେତେବେଳେ ପୋଡ଼ିଯାଏ, ବଳ ଆପେ ଆପେ ଆସେ ।

ସାବ—ପେଟ, ପୋଡ଼ୁଛି ? ତୋର ? କାହିଁକି ମ ? କେତେ ଅଳ୍ପ ଅଲରେ ଅଛୁ, ତୋର ତ ଚିନ୍ତା ମ ?

ରମା—ନାଇଁ, ମୋର ଚିନ୍ତା ନାଇଁ କହୁଛି ଯେ—

ସାବ—ତେବେ କୁଠାକୁଟି କରି କେଉଁଠୁ କହିଲୁ ?

ରମା—ଝୁପିରେ ।

ସାବ—ହିଁ, ଝୁପିରେ ? କେବେଠୁଁ ମ ? କେବେଠୁଁ ଏଡ଼େ ଚାଲାକ ହେଲୁ ? ମୋଠୁଁ କଥା ଛପାଉଛୁ—ଗୁଲବୁଟି ଆମ ଘରକୁ, ମୁଁ ସବୁ ଶୁଣେଁ ଆଗେ ତୋଠୁଁ, ଆ—( ଠାଣି ନେଇଗଲା ) ଆସିବୁଟି ?

ରମା—ନାଇଁ ମ କାଲି ଯିବି—ମୋର ପରା ତେଣେ କାମ ଅଛି ।

ସାବ—ଓଃ, କାମ, ଗୁଲ ( କାନ ଠାଣିଲା )

( ଏତେବେଳେ ଖୁବ୍ ନିକଟରେ ଶୁଭିଲା ସାଇକେଲ ଘଣ୍ଟି । ସାବ କାନଠାକୁ ଛାଡ଼ିଦେଇ ରମାକୁ କହିଲା )

ସାବ—ସାଇକେଲ୍ ଘଣ୍ଟି ଶୁଭୁଛି ପାଖଠାରେ—ସାନବାବୁ ହୋଇଥିବେ ଲୋ !

ରମା—ଯିଏ ହଉ, କେ ଜାଣେ ।

( ସଡ଼କ କାନ୍ଥକୁ ଯାଇ ଦୁହେଁ ଚିଠିକର ଅଡ଼ ହୋଇଗଲେ )

ସାବ—ଅଲେ, ସାନବାବୁ ତ !

ରମା—( ସାଇକେଲ ଯିବାପରେ ରାସ୍ତାକୁ ଆସି ) ହେଇଥିବେ, ଚାଲେ, ତମ ଘରକୁ ଯିବା ପରା ?

ସା.ବା—ଆମ ଘରକୁ ଯିବୁ !

ରମା—ହଁ, ଚାଲ ।

ସାବା—( ତଟସ୍ଥ ହୋଇ ଚାହିଁ ରହିଲେ ରମା ମୁହଁକୁ ନ ଯାଇ )

ରମା—( ହାତ ଟାଣି ସାବାର ) ଅସୁନ୍ତ କାହିଁକି ମ, ଆ ମ, ଆସ :

( ଚାଲିଗଲେ ) ( ସାବା ପଛେ ପଛେ ଗଲେ )

---

## ପଞ୍ଚମ ଦୃଶ୍ୟ

[ ଜମିଦାର କକ୍ଷ—ବାଜୟା ଗୀତ ଗାଉଛନ୍ତି ]

ଗୀତ

ଭାନେ ଭାନେରେ    କହ ଧୀରେ ଧୀରେ
ମନ୍ଦ ମୁଁରେ—    ଗନ୍ଧ ସମୀରେ
ସେ କି ମୋର ଅସିବାର ?
ଫୁଲ ସେ ବନ ବହୁଛି କହୁ ମନର କଥା ଜାଣୁ ମଧୁ
ଚନ୍ଦ୍ର ଭୁଲେ    ବସିଛି ମିତ
ଗୋପନେ ଗୋପନେ, ନିଶୀଥର ସ୍ୱପନେ
ଛୁଇଁ ଦେନ୍ତୁ, ପରଶି ଗୋ ଅଧରେ ।

ବାଜୟା—(ଗୀତ ଗାଇ ସାବ ବସି 'ସହକାର' ପଢ଼ୁଥିଲେ, ପଛରୁ ଆସିଛି 'ଅତ'-ଯେ ତା ନାଁ ଛକାଇରେ 'ରତ' । ଅଳ୍ପ ବୟସର ହିଅଟିଏ—ଦରହସ ମୁହଁଟି, ପଛରୁ ଆସି ବାଜୟା ହାତରୁ

ବନ୍ଧୁକଟା ଝାଣିନେଲା । ବଜସ୍ତା ପଛକୁ ଗୁହିଁ ଦେଖେ, 'ଅଭ'
ବନ୍ଧୁକଟା ଧରି ହସୁଛି । )

ବ: ସ୍ତା— ଅଭ, ଦେ, ବନ୍ଧୁକଟା ଦେ ।

ଅଭ—( ହସି ) ନାଇଁ ।

ବଜସ୍ତା—ଦେ, ମୁଁ ଛାଡ଼ିଥିଲି ପରା, ତୁ ବନ୍ଧୁକଟା କଅଣ କରିବୁ ?

ଅଭ — ଅଜା କାହାନ୍ତି ?

ବଜସ୍ତା—ତୋ ଅଜ ଟି, ସେ ଘରେ ଥିବେ ନାଁ ! ଦେଖି ଯା,
ବନ୍ଧୁକଟା ଦେ ।

ଅଭ—ନାଁ, ଅଜା କାହାନ୍ତି ଆଗ କହ ।

ବଜସ୍ତା—ତୁ ଏଠିକି ଆ, ନ ଆସିଲେ କହିବି ନାହିଁ, ଆ ମୋ
ପାଖକୁ ।

ଅଭ— ( ପାଖକୁ ଆସି ) କଅଣ ?

ବଜସ୍ତା—( ଚଟ୍ ଧରି ପକାଇ ) ମୋ ସୁନା ଝିଅଟି ପରା, ଅଭ କଅଣ
ସେମିତ କି ? ଭାରି ଭଲ ପିଲା, ଦେ, ବନ୍ଧୁକଟା ଦେ ।
( ବନ୍ଧୁ ନେଇ ) ବସ୍, ତୁ ପରା ଗୀତ ଶିଖୁଚୁ ?

ଅଭ —ହିଁ, ଗୀତ ଶିଖୁଚି, ନାଚ ଶିଖି ଚ ।

ବଜସ୍ତା—ହିଁ, ନାଚ କି ଶିଖୁଚୁ ? କାହିଁ କେମିତ, ନାଚିଲୁ,
ଦେଖେଁ ?

ଅଭ—ଉଁ ! ( ଲଜ୍ଜା କଲା )

ବଜସ୍ତା—ଛି, ସୁନାଝିଅମାନେ ଏମିତ ଲଜ୍ଜା କରନ୍ତି ? ନାଚ,
ତତେ ଭଲ ଛବି ଦେବି । ( ଘୁଙ୍ଗୁର ଆଣି ବାନ୍ଧିଦେଲା ଓ
ଅଭ ନାଚିଲା )

ବଜସ୍ତ—ବାଃ, ଭାରି ସୁନ୍ଦର ନାଚୁଛୁ ତ, ଅଜା ତୋ ନାଚ
ଦେଖିଲେଣି ?

ଅଡ—ନାଁ ।

ବିଜୟା—ଅଚ୍ଛା, ଅଜାଙ୍କୁ ତୋ ନାଚ ଦେଖାଇ ନାହୁଁ ? ସେ ଦେଖିଲେ ତ ଭାରି ଖୁସି ହେବେ, ହେବେ ଗେଲ୍ କରିବେ ତତେ ।

( ଅନନ୍ତ ବାବୁ ଅସିଛନ୍ତି—ଡାକିଲେ ନେପଥ୍ୟରୁ )

ଅନନ୍ତ—କଅଣ କରୁଛୁ ବିଜୟା ?

ବିଜୟା—( ଡାଢ ଅଡ଼କୁ ଗୃହିଁ ) ଓ, ଅନନ୍ତ ବାବୁ, ଆସନ୍ତୁ, ଆସନ୍ତୁ ।

ଅନନ୍ତ—( ଅଡକୁ ଦେଖି ) ଏଇଟି ?

ବିଜୟା—ଏଇଟି ଆମ ବାପାଙ୍କର ନାତୁଣୀ ।

ଅନନ୍ତ—ନାତୁଣୀ ?

ବିଜୟା—ରମାନନ୍ଦ ବାବୁ ଉଠଯାଚି ଟ୍ରାନ୍ସଫର ହୋଇ ଆସିଛନ୍ତି ସମ୍ବଲପୁରରୁ ଯେ, ତାଙ୍କର ଝିଅ, ଆମ ପଡ଼ଶାରେ ଅଛନ୍ତି, ବାପା ତାକୁ ନାତୁଣୀ କହିଛନ୍ତି ।

ଅନନ୍ତ—ଓଃ ।

ବିଜୟା—ଅନନ୍ତ ବାବୁଙ୍କୁ ନମସ୍କାର କରିଦେ ଅଡ !

ଅଡ—( ଅନନ୍ତବାବୁଙ୍କୁ ନମସ୍କାର କଲା )

ଅନନ୍ତ—ନମସ୍କାର ! ( ପିଲାକୁ କୋଳେଇ ) ଅଡ ? ଝିଅଟି ନାଁ ଅଡ ?

ବିଜୟା—ଅଡ ନୁହେଁ ଯେ ତା ନାଁ ରଡ—ବାପା ତାକୁ ଖେଳରେ ଡାକନ୍ତି ଅଡ ।

ଅଡ—ମାଉସି ! ମୁଁ ଅଜାଙ୍କ ପାଖକୁ ଯିବି ।

ବିଜୟା—ସେ ଶୋଇଲା ଘରେ ଥିବେ, ଯା, ସେମିତ ଦୁଆରେ ଠିଆ ଯା ।

ଅତ—ନାଁ ।

ବଳଯାତ୍ରା—ଯା । ( ଅନନ୍ତ ବାବୁଙ୍କୁ ) ସୁନ୍ଦର ନାଚେ ଗାଏ ଝିଅଟି ।

ଅନନ୍ତ—ସତେ ନା ?

ବଳଯାତ୍ରା—ଆଜି ଏଇନେ ବହୁତ ନାଚିବ, ଆପଣ ଅଳ୍ପ ଧନେ ତା
ନାଚ ଦେଖିବେ । ( ଅତକୁ ଗୁହାଁ ) ଯା । ( ଅତ ଦୌଡ଼
ପଳେଇଲା )

ଅନନ୍ତ—ଭଯ୍ୟୀ ବାଇଁ କି ?

ବଳଯାତ୍ରା—ଭଲ ପାଇବ ନାଇଁ, କଟେଗ୍ରୀରେ ଥିବେ ।

ଅନନ୍ତ—ଓଃ, ଠିକ୍ କଥା, ବଙ୍ଗୁବା ବନ୍ଧନରେ ପଡ଼ୁଛୁ ପରା ଆଜିକାଲି !
ତୁମେ ସେଇଟା କଅଣ ଚଳୁଛ ?

ବଳଯାତ୍ରା—ଆମ ଏକର ଗ୍ରାମ ସଂଗଠନ କହେଁ ।

ଅନନ୍ତ—( ହସି ) ତା ତ ନିଶ୍ଚୟ ନୁହେଁ, ତଥାପି—

ବଳଯାତ୍ରା—ଓଡ଼ିଶାର ରଙ୍ଗମଞ୍ଚ ସମ୍ବନ୍ଧରେ ଗୋଟାଏ ଆଲୋଚନା ।

ଅନନ୍ତ—ଲେଖିଛି କିଏ ?

ବଳଯାତ୍ରା—ନିଜର ନାଆଁ ଦେଲା ଭଳି ସତ୍ସାହସ ନ ଥିବା ଜଣେ
ଲେଖକ—ନାଆଁ ଦେଇଛି 'ଦୁର୍ଯ୍ୟଧର' ।

ଅନନ୍ତ—ତାପରେ, ଆଲୋଚନାଟି କେମିତ ହୋଇଛି ?

ବଳଯାତ୍ରା—ବାଜେ, ଗୁଡ଼ାଏ ଅନଧିକାର ଚର୍ଚ୍ଚା କରିଛୁ । ମୋର ତ
ଲେଖାଟା ପଢ଼ି ମନେ ହେଲା, ଭଦ୍ରଲୋକ ବନ୍ଧୁବା ନାଟକ,
ସଙ୍ଗୀତ—ମାନେ ମୋଟ ଉପରେ କଳା ସମ୍ବନ୍ଧରେ ଗୋଟାଏ
"ଗୋରୁ"—ଏବ ବୁଝ କାନୁହାର ।

ଅନନ୍ତ—କେମିତ ?

ବଳଯାତ୍ରା—ଷ୍ଟେଜ୍‌ରେ ତାଙ୍କର କେବଳ ଚୋଟାଗାଣ୍ଡା ଲେଖା ଗୁହ ;
କିନ୍ତୁ ସମସ୍ତେ ଏଇଆ ଗୁହାନ୍ତି ତ ? (ବହୁତା ବଦଳର ଟେବୁଲ

ଉପରେ କର୍ତ୍ତୃ) ଘୁଞ୍ଚନ୍ତୁ, ଆପଣଙ୍କର ଯୋଗ୍ୟତାଟା ଶୁଣାଯାଉ । କଅଣ କରୁଥିଲେ ଏ କେଇ ଦିନ ମଫସଲରେ ?

ଅନନ୍ତ—ମଫସଲ୍‌ଆମାନେ ଯାହା କରନ୍ତି ।

ବିଜୟା—ମାନେ ?

ଅନନ୍ତ— (ହସି) ଏଇ ବିଲବଛା, କାଦୁଅଚକଟା, ଧାନକଟା...... ଏଇସବୁ ।

ବିଜୟା—ତା ତ ନିଶ୍ଚୟ କରୁଥିବେ, ତା ଛଡ଼ା—

ଅନନ୍ତ—ତା ଛଡ଼ା ଆଉ କଅଣ ? ମଫସଲରେ ତ ଆଉ ସିନେମା, ଥିଏଟର ନାହିଁ, ମଉଜ ମଜଲିସ୍ ନାହିଁ—ଗାଁ ଗଣ୍ଡା, ଚଷା ଭୁଷା, ଧାନ ଗୁଡ଼ଲ, ମୁଗ ବିରି, ଏଇ କଥା ।

ବିଜୟା—ନାଁ ନାଁ, ମୁଁ ପଚାରୁଛି ଆପଣଙ୍କର ଗ୍ରାମ ସଂଗଠନ କେତେ ଦୂର ଆଗେଇଲା ?

ଅନନ୍ତ—ସେ ତାଉ ଚାଲିଛି ଧୀରେ ସୁସ୍ଥେ । ପ୍ରଜା ଏ କରିବେ ବା କଅଣ ? ହାତରେ ତ ପାଣି ନାହିଁ, ଚାରିଆଡ଼େ ଦୁର୍ଭିକ୍ଷ, ହା ଅନ୍ନର ଚିତ୍କାର । ଖଜଣା ଦେଇ ପାରୁ ନାହାନ୍ତି—ଗାଁର ଉନ୍ନତି କଅଣ କରିବେ ?

ବିଜୟା—ଆରେ, ତା ହେଲେ ଆପଣଙ୍କ ପରି ଯୋଗଜନ୍ମା କର୍ମୀ ସେପଟିକି ଯାଇ ଗାଁଟାକୁ ଗୁଣ ଅଙ୍ଗୁଳ ହେଲେ ଉପରକୁ ଟେକି ପାରିଲେ ନାହିଁ—ହାୟ, ହାୟ !

ଅନନ୍ତ—ହିଁ, ତମେ କାହିଁକି ବୁଝିବ ବିଜୟା, ଆଉ କେମିତି ବା ବୁଝିବ ? ସେମାନେ ଯେ ନିର୍ବୋଧ । ଖାଅନ୍ତୁ ନ ଖାଅନ୍ତୁ, ମରନ୍ତୁ ସରନ୍ତୁ, ଆମ ଦେଶର ପ୍ରଜା ଧର୍ମଭୀରୁ । ଆଜି ବି ପ୍ରଜା ବୁଝନ୍ତି, "ମହତୀ ଦେବତା ହ୍ୟେଷା ନରରୂପେଣ ତିଷ୍ଠତି ।"

ବିଜୟା—( ହସି ) ଓଃ, ସଂସ୍କୃତ—Dead language, ( ଡେଡ୍ ଲାଂଗୁଏଜ୍ ) ଯାଙ୍କ ସଙ୍ଗରେ ବି ଆପଣଙ୍କର ଢେରେ ଆଳାପ ପରିଚୟ ହୋଇଗଲାଣି ? ବାଃ, ସୁଖବର ! ଅର୍ଥଟା କଅଣ ଶୁଣେ ?

ଅନନ୍ତ—ମାନେ, ରାଜା ନର ରୂପରେ ଦେବତା, ଏଇ ଧାରଣାରେ ଆମ ଦେଶର ପ୍ରଜା କରେ ରାଜାର ପୂଜା—

ବିଜୟା—ଏବେ କରିବା ଉଚିତ ବୋଲି—

ଅନନ୍ତ—ଆଜି ନିଜେ ଖାଇଲା ବେଳକୁ ଖାଏ କଅଣ ଜାଣ ? ମାଣ୍ଡିଆ ଜାଉ, କଳମ ଶାଗ—ତା ବି ଅଧାପେଟ, ଆଉ ରାଜାର ଭୋଗ ଲଗାଏ—ପଲାଉ, ମାଂସ ।

ବିଜୟା—ଭାଗ୍ୟ, ଯାହାକୁ ଯେମିତି ଭଗବାନଙ୍କର ବରାଦ ! Rich and poor ( ରିଚ୍ ଆଣ୍ଡ ପୁଅର୍ ) ଏ ଦୁଇ କଥା ତ ପେର୍ ଦୁନିଆଁରେ ଚଳୁଛି, ଆଉ ଚଳିବ ?

ଅନନ୍ତ—କିନ୍ତୁ ଭଗବାନ୍‌ର କଥା ନୁହଁ, ରକ୍ତ ମାଂସ ତ ଦୁଇ ପ୍ରକାର ନୁହେଁ ? ଗରିବ ତ ପେର୍ ବଡ଼ ଲୋକ ହୁଏ—ଟଙ୍କ ଦୂରେ ।

ବିଜୟା—କିନ୍ତୁ —

ଅନନ୍ତ—କିନ୍ତୁ କିଛି ନୁହେଁ ବିଜୟା ! ଦୂରେଇ ପାରିଲେ ହେଲା । ଯାଉ, ଗରିବ ତୁମେ ଦେଖିନି—ଗରିବର ମନ ତୁମେ ଚିହ୍ନିନି; ଦେଖିଲେ ଜାଣିବ ଭଗବାନ୍ ସେଇଠି ଜାଗ୍ରତ ।

ବିଜୟା—( ହସି ) ସୁସମ୍ବାଦ ! ତାହେଲେ ତ ରୋଜ୍ ଆପଣ ଭଗବାନଙ୍କ ସଙ୍ଗେ Table talk ( ଟେବଲ୍ ଟକ୍ ) କରୁ ପାରୁଥିବେ ମଫସଲର ସେଇ ଭଙ୍ଗା କୁଡ଼ିଆ ଭିତରେ ।

ଅନନ୍ତ—ଥରେ ଯାଇ ନିଜେ ଦେଖ, ଭଗବାନ୍ କିପରି ସେଠି ମାଣ୍ଡିଆ ଜାଉ, କଳମଶାଗ ଖାଆନ୍ତି ।

ବିଜୟ୍ବା—ନିଷ୍ଟୟ, ନିଷ୍ଟୟ, ବାପାଙ୍କୁ କହୁ ଅଜି ଗାଡ଼ିଟା ପାଇଁ Permission (ପରମିଶନ) ନେବ । କେତେ ବେଳେ ଚଲେ ତାଙ୍କ ଦେଖା ହେବ ଭଲ ?···ଓ, I am sorry (ଅଇ ଅମ୍ ସରି)—କହୁଚଲେ ପରା ସେ ସବୁବେଳେ ଜାଗ୍ରତ୍ !

ଅନନ୍ତ—କାନ୍ଦୁ ମୋଟରରେ ଗଲେ ତ ହବ ନାହିଁ ?

ବିଜୟ୍ବା—ଓ, ଭୟ କରଚେ ପରା ସେ ? ହିଁ ହିଁ, ଲଙ୍ଗଳୀ ନା ! ଯାଅନ୍ତୁ ଯାଅନ୍ତୁ, ଆପଣଙ୍କର ଏ ଅବସ୍ଥାରଟା ଭାଇଙ୍କ ଅଗେ କହୁ-ଦେବେ । ହୁଏତ ସେ ବ ଯିବାକୁ—

ଅନନ୍ତ—ଖୋଜୁଛି ତ ତାକୁ, ଶୁଣିଲି ତାର ବାହାଘର ସବୁ ଠିକ୍‌ଠାକ୍ ହେଉଚି ।

ବିଜୟ୍ବା—ହିଁ, କିନ୍ତୁ ତା ପୂର୍ବରୁ ଏ ଭଗବାନଙ୍କ ଦର୍ଶନଟା ଅନ୍ତତଃ ମୁଁ ପସନ୍ଦ କରିପାରୁ ନାହିଁ ।

ଅନନ୍ତ—କାରଣ ?

ବିଜୟ୍ବା—ହୁଏତ, ତାଙ୍କ ପରନ ବାଜି ଭାଇଟି ମୋର ଅପଣାଙ୍କ ପରି ରୁଷ ପାଲଟି ଯାଇ ପାରନ୍ତି ।

ଅନନ୍ତ—ସେ ଭୟ କର ନାହିଁ । ତେବେ ମୁଁ ଶୁଣିଲି ପ୍ରଜାମାନେ ସାନବାବୁଙ୍କର ଏ ବାହାଘର ଖବରରେ ଖୁବ୍ ଖୁସି ।

ବିଜୟ୍ବା—ହବାର କଥା—ଜମିଦାର ଘର, ଧୁମ୍‌ଧାମ୍ ହେଉଛି ଭଣା !

ଅନନ୍ତ—ଅଜ୍ଞ, ଏଇସବୁ ଧୁମ୍‌ଧାମ୍—କେତେ କଥା ହେବ ପ୍ରଜାଙ୍କ ରକ୍ତରେ ।

ବିଜୟ୍ବା—ଜମିଦାର ଘର ବାହାଘର—ଯେମିତ ହେଇ ଆସୁଚି, ଚଳିଚଲିତ ପ୍ରଥା ।

ଅନନ୍ତ—ଅନ୍ତତଃ, ଜମୀର ବାହାଘରରେ ଏ ପ୍ରଥା ବଦଳିବା ଉଚିତ, ମୁଁ ଅସିଛି, ସେଇଥିପାଇଁ ।

ବିଜୟା—ଭାଇଙ୍କର ସେଥିରେ ହାତ କଅଣ ? ବାପାଙ୍କୁ କୁହନ୍ତୁ; ତା ଛଡ଼ା ଜାଣନ୍ତି ତ, ବାହାଘର ପ୍ରତାପପୁର ଜମିଦାର ଘରେ—ଯେମିତ ଭାବରେ ହେବା ତ ଗୃହ୍ୟ ।

ଅନନ୍ତ—କିନ୍ତୁ ଜମ୍ବୀର ଇଚ୍ଛା ତ—

(ହଠାତ୍ ସେ ଘର ଭିତରକୁ ପଶିଆସିଲେ ଜମିଦାର)

ଜମିଦାର—ଓ, ଅନନ୍ତ, ତୁମେ ଏଠି ? ତାହେଲେ—ନାଃ, ଦାମା କଥାଇ ସତ, ସେ ଠିକ୍ ହରିପୁର ଯାଇଚି । ଅଚ୍ଛା, ଦାମା, ଦାମା ! (ପ୍ରସ୍ଥାନ)

ଅନନ୍ତ—ବିଜ !

ବିଜୟା—ବଡ଼ ଅଡ଼ୁଆ ହେଲା, ଭାଇ ଯଦି ସତରେ ହରିପୁର ଯାଇଥାଆନ୍ତି......ଆପଣଙ୍କର ସାଇକଲ୍ ଅଛି ତ ?

ଅନନ୍ତ—ଅଛି ।

ବିଜୟା—ବାପା ଦାମାକୁ ବୋଧହୁଏ ପଠେଇଲେ ରମା ଘରେ ଖବର ନେବାକୁ । ଦାମା ଯାଇ ପହଞ୍ଚିବା ଆଗରୁ ଆପଣ କୌଣସି-ମତେ ରମା ଘରୁ ଭାଇଙ୍କୁ ଡାକି ଆଣନ୍ତୁ ।

ଅନନ୍ତ—( ବାହାରିଲେ )

ବିଜୟା—ଆଉ ଗୋଟିଏ କଥା, ରମା ଘରୁ ଯେମିତି ଦାମା ସନ୍ଧାନ ନ ପାଏ ଭାଇ ଯାଇଥିବାର । (ଦୁହେଁ ଦୁଇ ଅଡ଼କୁ ଗୁଲି ଯାଇଥିବାବେଳେ, ଗୃହର ଟୋକା 'ବାଲିଆ' ଦୌଡ଼ି ଦୌଡ଼ି ଭିତରକୁ ଅସିଲା )

ବାଲିଆ—ଦେଇ, ଦେଇ, ସାନବାବୁ !

ବିଜୟା—କୋଉଠି ? କାହାନ୍ତି ସେ ?

ବାଲିଆ—ବଟଗଛ ମୂଳରେ ।

ବିଜୟା—ବଟଗଛ ମୂଳରେ, କାହିଁକି ?

ବାଲ୍ଅ—ଆସି ପାରୁ ନାହାନ୍ତି ପରା ?

ଅନନ୍ତ—କଅଣ ଆସି ପାରୁ ନାହାନ୍ତି ସେ, କାହିଁକି ?

ବାଲ୍ଅ—ମାଡ଼ ବସିଛନ୍ତି ଘରଭିତରେ ।

ଅନନ୍ତ—ମାଡ଼ ବସିଛନ୍ତି ! !

ବାଲ୍ଅ—ହଁ, ସାଇକଲ ଭାଙ୍ଗି ଚୂନା, କଥା କହିପାରୁ ନାହାନ୍ତି, ଶାମା ଗଜଡ଼ ପଚା ଠେଙ୍କ କର ନେଇ ଅସିଚ ।

ଭଜସ୍ଥା—ଏଁ ! ଏମିତ କଅଣ ହେଲ ? ଅହନ୍ତୁ ତ ଅନନ୍ତ ବାବୁ !
(ବିଜ ଅନନ୍ତ ଚାଲିଗଲେ)

---

## ଷଷ୍ଠ ଦୃଶ୍ୟ

[ଗ୍ରାମପଥ—ଦୁଇଜଣ ଯୋଗୀ ଗୀତ ଗାଇ ଭିକ ମାଗୁଥିଲେ]

### ଗୀତ

ଭାଲ ବଇଭବ ହେଲରେ କୁମର ! ଯୋଗୀ ଥାଳି ଗଳା ଫାଟି,
ହାତ ବଢ଼ାଇଲି ଅପଣା ସୁନାକୁ, ସେ ପୁଣି ହୋଇଲା ମାଟି ।
ରାଜା ହେବେ ବୋଲି ଢୁର ପଡ଼ିଥିଲା, ବିଧାତା ଭିଅଣ ଆନ,
କିଏ ଜାଣିଥିଲା ଚଉଦ ବରଷ ରାମ ପୁଣି ଯିବେ ବନ ?
ରାମ ଲକ୍ଷ୍ମଣ ସୀତାୟା ଚଳିଲେ ପିନ୍ଧି ଜଟା ବଳକଲ
ରାଜାପୁଅ ପୁଣି ବଣରେ ପଶିଲେ, ଦୁଃଖେ କଟାଇଲେ କାଳ ।
ସବୁ ଦିନେ ସବୁ କଥା ରହିବ କି କିଏ ସେ କହିବ ଠାଣି
ଆଜି ରଜା କାଲି ବାଟର ଭିକାରୀ, ରହୁଛି କାହା ଗୁମାନ ?
ଆଖି ବୁଲୁଥିଲେ ଚକ ବୁଲୁଥାଇ, ଫାନ୍ଦରେ ପଡ଼ିଲେ ସନ୍ଧି
ଅଡ଼େଇ ଦିନକୁ କୁଣିଆଁ ସଭିଏଁ, କାହାର ନୁହେ ଏ ମନ୍ଦି ।

( ଗାଇ ଗାଇ ଚାଲିଗଲେ )

# ସପ୍ତମ ଦୃଶ୍ୟ

## ଜମିଦାରଙ୍କ ଗୃହ ବହିର୍ଦେଶ

[ ଦ୍ୱାର ବନ୍ଦ, ତାଲ ପଡ଼ିଛି, ଭିତରୁ ଶୁଭୁଛି ଶବ୍ଦ ଛାଡ଼ିବାପରେ ବଜ୍ରଯୁଁ ଆସି ଗୋଟାଏ ଗୁବିଥୋଲରୁ ଗୁବି ବାଛି ବଡ଼ ସଙ୍କୋଚରେ ତାଲରେ ଗୁବିଟି ଲଗାଇଲା । ସେ ଗୁବି ଲଗାଇଲା ବେଳେ ଭିତରୁ ଡାକ ଶୁଭିଲା । ]

ରମା—(ଭିତରୁ) ଦାମା ଭାଇ ! ଗୋଡ଼ତଳେ ପଡ଼ୁଛି ତୋର, ଛାଡ଼ିଦେ, ଛାଡ଼ିଦେ ମୋତେ ।

ବଜ୍ରଯୁଁ—(କବାଟ ପିଟାଇ ଗୁହାରିଲା)

ରମା—(ଦେଖି ଚମକି ଉଠିଲା ) ତୁମେ, ଆପଣ ?

ବଜ୍ରଯୁଁ—(ହାତ ଠାରି) ଅସ୍ତେ ଅସ୍ତେ ।

ରମା—ମତେ ଡାକଥିଲ କାହିଁକି ?

ବଜ୍ରଯୁଁ—(ଆଶ୍ଚର୍ଯ୍ୟ ହୋଇ) ମୁଁ ?

ରମା—(ଅଣ୍ଟା ଭିତରୁ କାଢ଼ି ) ହଁ, ଏ ଚିଠି । (ଦେଖାଇଲା)

ବଜ୍ରଯୁଁ—ଚିଠି, ମୋର ଚିଠି ? (ନେଇ ଚିଠି ଖୋଲିଲା )

ରମା—ଚିଠି ଲେଖି ମୋତେ ଘରୁ ଡକାଇଆଣି—

( ନେପଥ୍ୟରୁ ଦାମା ଓ ଜମିଦାର କଥାବାର୍ତ୍ତା ହୋଇ ଆସୁଥିଲେ ସେଇ ଘରକୁ )

ଦାମା—(ଅନ୍ତରାଳରୁ କହୁଛି) ନାଁ, ସେ କିଛି ଜାଣନ୍ତି ନାହିଁ ।

ବଜ୍ରଯୁଁ—(ରମା ସହିତ ଭିତରକୁ ପଶି କବାଟ ଆଉଜାଇ ଦେଲା । ଜମିଦାର ଓ ଦାମା ସେ ଘରକୁ ଆସିଲେ)

ଜମିଦାର—ବେଶ୍, ସେ ଯେପରି କିଛି ଖବର ନ ପାଏ, ଅନ୍ତଃ ସାକ୍ଷାତ୍ ସେ ଲୋକଟାକୁ—

ଦାମା—ଆଉଟି ତୁଣ୍ଡ ବଢ଼ବ ହଜୁର ! ଏଠିକି ସିନା ଚିଠିଟାଏ ଲେଖାଇ ତାଙ୍କୁ ନେଇ ଆସିଲ, ସେ କଅଣ ସହଜେ ଗାଆଁ ଛାଡ଼ି ଯିବ ?

ଜମିଦାର—ଦେଖ୍, ସେଷ୍ଟାକର ସମସ୍ତେ ଶୋଇ ସାରିଲେ, ନାଇଁ ତ ଜବରଦସ୍ତ ତାଙ୍କୁ ନେଇ ମଫସଲର କଚେରୀ ଘରେ ଅଟକ କର—ଖାଲି ସାନବାବୁର ବାହାଘରଟା ସରିବା ଯାକ୍ ।
(ଗୁମାସ୍ତା ଆସି ପ୍ରଣାମ କଲା)

ଗୁମାସ୍ତା—ଆସିଗଲେଣି ସବୁ ।

ଜମିଦାର—କିଏ ?

ଗୁମାସ୍ତା—ଆସିଗଲେ ପ୍ରତାପପୁରରୁ ସେମାନେ !

ଜମିଦାର—ବସାଇଛ ତାଙ୍କୁ ସବୁ ? ପାନ, ସିଗାରେଟ୍ ପଠାଇଦିଅ, କନ୍ୟାର କୋଷ୍ଠିଟା ଆଣିଛନ୍ତି ତ ?

ଗୁମାସ୍ତା—ଆଜ୍ଞା, ତା ଆଉ ଆଣି ନ ଥିବେ କି ?

ଜମିଦାର—ସେ ଖବରଟା ଟିକିଏ କରି ନେଇ ପାରିଲ ନାହିଁ ତୁମେ; ନାଁ ? କୋଷ୍ଠି ନ ଆଣି ଆସିଥିଲେ କଅଣ ମୁହଁ ଦେଖାଇବାକୁ ମନେ ? ଯା, ବୁଝ୍, ନାଇଁ ତ ଲୋକ ପଠେଇ ଅଣେଇନିଅ । ମୁଁ ଗଲାବେଳକୁ ଯେମିତି ଆସିଥାଏ ।

ଗୁମାସ୍ତା—ଆଜ୍ଞା ! (ଚାଲିଗଲା)

ଜମିଦାର—ଦାମା !

ଦାମା—ଆଜ୍ଞା !

ଜମିଦାର—ତାଙ୍କ, କୋଉଠେ ?

ଦାମା—(ହାତ ଠାରି ଘର ଦେଖାଇଲା)

ଜମିଦାର—(ସେ ଘରକୁ ଚାହିଁ) ହୁଁ, ଥାଉ—(ଚାଲିଗଲେ)

ବଜୟୀ—(ହାତରେ ଖଣ୍ଡେ ଚିଠି ଧରିକରି, ଘରୁ ବାହାରି ଆସିଲା; ଚାହିଁଲା ଚାରିଆଡ଼କୁ; ଦେଖିଲା କେହି ନାହିଁ, ଚିଠିକୁ ଦେଖି) ହୁଁ ।

ରମା—ଦେଖି ଡକେଇଛନ୍ତି ବୋଲି କହୁ ଏ ଗଠି ଦେଇ—

ବିଜୟା—ବୁଝିଲି, ସେ ଚିଲଟି ତୁମ ଗାଁ ର, ନାଁ ?

ରମା—ହଁ ।

ବିଜୟା—ତା ପରେ ଏ ଘରେ ? —

ରମା—ଆସିଲାବେଳେ ବାଟରେ ମାଡ଼ ମାଡ଼ ପଡ଼ୁଥାଏ—ଯେମିତି କିଏ ଜଣେ ପଛରେ ମୋର ଅଛୁରି । ଉଆସ ଅଗଣାରେ ପଶୁଛି ଦେଖେଁ ଦାମା ମୋ ପଛରେ—ମୋତେ ଡାକେ ମାରି ବସିଲା । ରାଗ ଲାଗିଲା ମୋତେ ତାକୁ ଦେଖି । ପଚାରିଲି— ଦେଖି କାହାନ୍ତି ? ଏଇ ଘରେ ଅଛନ୍ତି ବୋଲି, ମୋତେ ଘର ଭିତରକୁ ବାଟ ଦେଖାଇ ଦେଇ—

ବିଜୟା—ତାପରେ ତାଙ୍କ ବନ୍ଦ କରି—

ରମା—ହଁ ।

ବିଜୟା—( ଭାବି, ଟିକିଏ ପରେ ) ଅଚ୍ଛା, ଦାମା ଆଗେ—ଯା ଏବେ —ତମ ସାଙ୍ଗେ କେବେ, ଭଲ—

ରମା—(ମୁହଁ ପାଣ୍ଡୁର ହୋଇଗଲା, ଗୁହଁ ଲା, ଗାଲି ଉପରେ ଛାତ ଥରିଲା ସତେ)

ବିଜୟା—ଡର ଭୟ ନାହିଁ କହ ! (ଗୃହଅଡ଼କୁ ଗୃହିଁ ରମାକୁ ତଦବସ୍ଥ ଦେଖି ପିଠିରେ ହାତ ମାରି) କହ ।

ରମା—ସେଠା ନିହାତ ଗରିବ ଲୋକ—ତାର ଇଚ୍ଛା (ଅଧା କହୁ ତଳକୁ ମୁଣ୍ଡ ପୋତିଲା)

ବିଜୟା—(ଅଳ୍ପ ନୀରବ ରହୁ) ହଁ, ଜମିଦାରର ପୁଅର ସେ—

ରମା—(ହାତ ଯୋଡ଼ି) ଦେଖି, ଆପଣ ସାହା ନ ହେଲେ—

ବିଜୟା—ଆହା, ଛି ଛି ! (ରମାହାତ ଛଡ଼ାଇବାକୁ ଯାଇ ଦେଖିଲା ତାର ଚିହ୍ନା ମୁଦ ରମାର ଅଙ୍ଗୁଠିରେ । ଚମକିଲା ପରି ତାର

ଅଙ୍ଗୁଠି ଧରି ପଚାରିଲା) ରମା ! (ରମାର ମୁହଁକୁ ଚାହିଁ ରହିଲା)

ରମା—(ଥବ୍ବାପର୍ ହୋଇ ଗୋଡ଼ତଳେ ପଡ଼ି ଯାଉଥିଲା)

ବିଜୟା—(ଉଠାଇ ଧରି କୋଳରେ ଅଜାଇ ନେଇ) ରମ ; ଭାଇଙ୍କର ଏ ମୁଖ, ଆଉ ତା ସଙ୍ଗେ (ବେକରୁ ହାର କାଢ଼ି ରମାକୁ ଦିଖାଇ) ଅଙ୍ଗୁଠି ଏ ମୋର ବହିଲା । ଦାମା ତମକୁ ଏତେବେଳେ ଅଣିଚି, ବେଶ୍ କରିଚି । ଭାଇଙ୍କ ଅସୁସ୍ଥ ବେଳେ—

ରମା—କଅଣ ହେଉଚି ତାଙ୍କର ? (ଜଳୁଣ୍ଠାରେ ଚାହିଁଲା)

ବିଜୟା—କିଛି ଜାଣି ନାହିଁ, ନାଁ ? ପଅରଦାନ ସଞ୍ଜବେଳେ ସାଇକଲ୍ ନେଇ ବାହାରି ଥିଲେ; ଫେରିଲା ବେଳେ ଅନ୍ଧାରରେ ଗୋଟେ ଗଡ଼ା ଖାଇ, ଝିଙ୍କା ବେଶି ରକ୍ତମର—

ରମା—ମୁଁ ଯିବେ, ଦେଖିବି—

ବିଜୟା—ଓ, ଦେଖିବ, ତାଙ୍କୁ ? ଅଜ ତୁମକୁ ବି ଦେଖିଲେ ବୋଧ ହୁଏ—

(କୋଳେଇ ମୁଣ୍ଡ କାନ୍ଧରେ ରଖିଲା)

ଅନନ୍ତ—(ଅନ୍ତରାଳରୁ ଡାକିଲା) ବିଜୁ ! (ବିଜୟା ରମକୁ ଛାଡ଼ି ରମାକୁ ଘର ଭିତରେ ନେଇଲା ଭଉଁ ଭରି କବାଟ ଅଜାଇ ଆସୁଚି)

ଅନନ୍ତ—(ପ୍ରବେଶ କରି) ବିଜୟା !

ବିଜୟା—ଓ, ଅନନ୍ତବାବୁ, ଆପଣ ! ଭାଇ ସେ ଘରେ ଅଛନ୍ତି—

(ଅନ୍ୟ ଘରକୁ ଦେଖାଇ ଦେଲା)

ଅନନ୍ତ—(ଯାଉ ଯାଉ ଫେରି) ତମେ ଏଠି—

ବିଜୟା—ଯାଆନ୍ତୁ, ଭାଇ ଖୋଜୁଥିଲେ—

ଅନନ୍ତ—ମୋତେ ? ମୋତେ ଖୋଜୁଥିଲ ?

ବିଜୟ୍ଯା—(କବାଟ ପଛଆଡ଼ୁ ଅଡ଼ୁଜାଇ ଦେଇ ଦେଇ) ହଁ ।

( ଅନନ୍ତ ଗ୍ଭଲଗଲ, ତାଙ୍କ ଯିବାପଥ ଗ୍ଭହିଁ ) ଓଃହୋ ! ( କବାଟ ପିଟାଇ ପୁଣି ଉମାକୁ ବାହାରକୁ ଅଣିଲ )

---

## ଅଷ୍ଟମ ଦୃଶ୍ୟ

କକ୍ଷ

[ଅନନ୍ତ ଘର ଭିତରକୁ ଅସି ଦେଖିଲ କେହୁ ନାହିଁ । ଖଣ୍ଡେ କାଗଜ ଟେବୁଲ ଉପରୁ ଅଣି ପଢ଼ୁଛନ୍ତି—ଶୁଖିଲ ମୁହଁରେ ପଶି ଅସିଲ ସେ ଘରକୁ ଜୟ୍ନୀ । ଅନନ୍ତକୁ ଦେଖି]

ଜୟ୍ନୀ—କରେ, ହଠାତ୍ ଏତେ ରାତିରେ ?

ଅନନ୍ତ—ତୋତେ congratulate ( କଂଗ୍ରାଚୁଲେଟ୍ ) କରିବାକୁ ମଫସଲରୁ ଗ୍ଭଲି ଅସିଲି ।

ଜୟ୍ନୀ—ମାନେ ?

ଅନନ୍ତ—ନିଶ୍ଚୟ, କଂଗ୍ରାଚୁଲେଟ୍ କରିବାଟା ଉଚିତ ନୁହେଁ ? ଏତେ ବଡ଼ ସୁଖବର—ତୋର ବାହାଘର, ତା ପୁଣି ମସ୍ତ ବଡ଼ ଜମିଦାର ଘରେ; ଇଲ୍ଲକା ତମାମ୍ ହୁରି ପଡ଼ିଛି—ଗ୍ଭଜା ବାଅ, ଭେଦା ବାଅ । ସ୍ତାଏ ଭୋକ ଉପୋଷରେ ମରି ବି ଏ ଅନନ୍ଦରେ ସହଯୋଗ କରିବାକୁ ବାଧ୍ୟ । ଅଉ ଏତେ ଅନନ୍ଦ ଭିତରେ ମୋର ବାଲ୍ୟବନ୍ଧୁର ବାହାଘର ହେବ,—ମୁଁ କଂଗ୍ରାଚୁଲେଟ୍ କରିବି ନାହିଁ—ଏ କେମିତି କଥା ?

ଜୟୀ—ଅନନ୍ତ, ଭୋକିଲା ପ୍ରଜାଏ ଯେମିତି ବାଧ୍ୟ ହୋଇ ଅନନ୍ଦ ହେଉଛନ୍ତି, ତୁ ବୋଧହୁଏ ସେମିତି ଖୁବ୍ ଅନନ୍ଦ ହେବୁ, ଯଦି ଏ ବାହାଘରଟା ହୁଏ !

ଅନନ୍ତ—ସେ ଯାହା ହେଉ, ଗୋଟେ ସୁଖବର ତ !

(ବିଜୟୀ ରମା ପଛପଟେ ଝରକା ଖୋଲି ଶୁଣୁଥିଲା)

ଜୟୀ—ସୁଖବର ?

ଅନନ୍ତ—ନୁହେଁ ? ଜମିଦାର ପୁଅର ବାହାଘର ହବ— ଜମିଦାର ଝିଅ ସଙ୍ଗେ—ନାଚ, ତାମାସା, ବାଜା, ରୋଷଣୀ, ଟି ପାର୍ଟି (Tea Party), ଶାଢ଼ୀ, ଗହଣା, କେତେ କଥା !—ଅଡ଼ମ୍ବରର ସୀମା ନାହିଁ, ଖରଚର ଖାପ ମାପ ନାହିଁ—ଅଜି ଏ ଖରଚ ଯୋଗାଇବେ ହଜାର ହଜାର ନିରନ୍ନ ପ୍ରଜା । ନରକଙ୍କାଳରେ ଜଳିବ ରୋଷଣୀ । ଲକ୍ଷ ଅଖିର ଲୁହ ହେବ ଦୀପାଘର ଅଧାର—ହୁଏତ ଟଙ୍କାଦାନ ଉପବାସୀ ଶିଶୁ ସନ୍ତାନର ମୁହଁରୁ ଅଧାର ଛଡ଼ି ନେଇ, ମାଛ ଭାର ଦେବ ଜମିଦାର ବାହାଘର ଭୋଜିର ଗୁଦା । ଏ କଅଣ କମ୍ ଅନନ୍ଦ ଜୟୀ ?

ଜୟୀ—(ହଠାତ୍ ଉଠି, ଅନନ୍ତର ମୁହଁରେ ହାତ ଦେଇ) ବନ୍ଦକର, ଅନନ୍ତ !

ଅନନ୍ତ—(ହାତ ଛଡ଼ାଇ) ଏଁ, ମୁହଁ ବନ୍ଦ କରିବାକୁ ଚେଷ୍ଟା କରନା ଜୟୀ—କୋଟିଏ ମୁହଁ ଗୋଟିଏ ହାତରେ ବନ୍ଦ ହୋଇ ପାରେ ନା । (ଉଠି) ଯାଉଛି ମୁଁ, ଖାଲି ଏ ସୁଖବରଟା ଶୁଣି ତୋତେ କଙ୍ଗ୍ରାଚୁଲେଟ୍ କରିବାକୁ ଅସିଥିଲି ।

ଜୟୀ—(ଅନନ୍ତକୁ ଦମ୍ଭାଇ ଲୁହଭରା ଅଖିରେ ) ଅନନ୍ତ, ବିଶ୍ବାସ କରୁନ୍ ମୋତେ ? ବାହାଘରର ଅୟୋଜନ ହଉଛି,

ଜମିଦାର ବସୁଛନ୍ତି—ଜମିଦାର ଘରେ ? ମନୁଷ୍ୟର ମନ ଧଅର ବାହା ହୋଇପାରେ ନା । ଜମିଦାର ଘର, ଏ ବାହାଘରରେ ବାଜା, ରୋଷଣୀ, ଧୂମ୍-ଧାମ୍, ଆନନ୍ଦ; କିନ୍ତୁ ତୁ ତ ଜାଣୁ ଯାର ବାହାଘରରେ ତୁ congratulation (କଂଗ୍ରାଚୁଲେସନ୍) ଜଣାଇବାକୁ ଆସିଚୁ, ତାର ବାହାଘର ସବୁଚ—ଅନେକ ଧନୀ ସେ ବାହାଘରର ସାକ୍ଷୀ—ଟେବଲ ଗୁଡ଼ାକଟି ଅକ୍ଷିର ଲକ୍ଷ୍ୟ—ଏତେ ବେଗେ ତୁ ଭୁଲି ଯାଉଚୁ ?

ଅନନ୍ତ—ଜୟନ୍ତୀ, ମୁଁ ଗରବ; ପାସୋରୁ ମନଟା ବଡ଼ଲୋକର ସାଥୀ, ତା ନ ହେଲେ ଆଜ ଏ ସୁସମ୍ବାଦଟା—

ବିଜୟା—( ହଠାତ୍ ଭିତରକୁ ଆସି ବୁଲାଇ ଆସି ) ଅନନ୍ତ ବାବୁଙ୍କ ପ୍ରସ୍ତାବକୁ ମୁଁ ଅନୁମୋଦନ କରୁଚି ।

ଅନନ୍ତ—ବିଜୟା ! ( ଗୁହଁ ରହିଲା ଅସ୍ଥିର ହୋଇ )

ବିଜୟା—ହିଁ, ଅନନ୍ତବାବୁ, ଆପଣଙ୍କ କଥାକୁ ଜଣେ ତ ଉପରୁ ଅନୁମୋଦକ ଦରକାର ? ଧରନ୍ତୁ, ମୁଁ ସେହି ସ୍ଥାନ ପୂରଣ କଲି । ( ଚୌକିରେ ବସିଲା )

ଜୟନ୍ତୀ—ବିଜ, ବାପାଙ୍କୁ କହ ଏ ବିବାହ ହୋଇ ପାରିବ ନାହିଁ ।

( ଝରକା ପାଖରୁ ରମା ଚାଲିଗଲା )

ବିଜୟା—ହୋଇ ପାରିବ ନାହିଁ ?

ଜୟନ୍ତୀ—କାହିଁ, ମୋତେ କେହି କିଛି ପଚାରି ନାହିଁ ?

ବିଜୟା—ସେଇଟା ବାପାଙ୍କ ଇଚ୍ଛା, ସେ ତ ଜାଣି ନ ଥିଲେ ଯେ ସେ ଏମିତି ଅବାଧ୍ୟ ସନ୍ତାନର ପିତା ବୋଲି ?

ଜୟନ୍ତୀ—ହିଁ, ସେ ଜମିଦାର, ସମସ୍ତେ ତାଙ୍କର ବାଧ୍ୟ—ଘରବାହାର ପର୍ଯ୍ୟନ୍ତ, ଏମିତିକି ରାଜ୍ୟର ପଶୁପକ୍ଷୀ ପର୍ଯ୍ୟନ୍ତ ତାଙ୍କର ବାଧ୍ୟ ବୋଲି ସେ ଧାରଣା କରନ୍ତି ।

ବିଜୟା—ଠିକ୍ ତ କହୁଛ ।

ଇନ୍ଦ୍ରୀ—କିନ୍ତୁ ତାଙ୍କର ଏ ଧାରଣା ମୁଁ ବଦଳାଇ ଦେବ ।

ବିଜୟା—କଅଣ, ବାପାଙ୍କର ଅବାଧ୍ୟ ହୋଇ ?

ଇନ୍ଦ୍ରୀ—ବାପାଙ୍କର ତ ମୁଁ ଅବାଧ୍ୟ ନୁହେଁ; ଜମିଦାରଙ୍କର ମୁଁ ବାଧ୍ୟ ନୁହେଁ, ଆଉ ଯଦି ସେଥିପାଇଁ ଦରକାର ହୁଏ—

ବିଜୟା—(ଗମ୍ଭୀରତାର ଛଳନା କରି) ରହ, ରହ ଭାଇ, ହିସାବଟା ଠିକ୍ କରି ଦେଖିନିଏ :—ବାପା—ଜମିଦାର, ସାନବାବୁ—ଭାଇ, (ଅଙ୍ଗୁଠି ଗଣିସାରି) ହଁ, କହୁଥିବି ଭାଇ, କିଏ କାହାର ବାଧ୍ୟ, କିଏ କାହାର ଅବାଧ୍ୟ ?

ଇନ୍ଦ୍ରୀ—ମୋଟ ଉପରେ ମୁଁ କହେଁ ତୁ ବାପାଙ୍କୁ କହ—ମୁଁ ବାହା ହେବ ନାହିଁ ।

ବିଜୟା—କିନ୍ତୁ, ମୋର ଯେ ଗୋଟେ ଭାରି ଦୁଃଖ—ନିହାତି ଦର୍କାର । ତୁମେମାନେ ସମସ୍ତେ ହେଲ ନୀରସ । ଏକୁଟିଆ ମୁଁ, ନା ସିନେମା, ନା ଥିଏଟର, ନା ଗୀତ, ନା ବାଜା—କିଛି (enjoy) ଏଞ୍ଜିୟ କରି ପାରୁନାହିଁ । ଅନ୍ତତଃ ଏଥିପାଇଁ ତ ହେଲେ ମୋର ଗୋଟେ ସାଥୀ ନିହାତି ଦରକାର (and she must be my) ଅଣ୍ଟି ସିମନ୍ସ ବ ମାଇଁ ଭାଉଜଟେବାକୁ (ହସିଲା)

ଇନ୍ଦ୍ରୀ—ବିଜି ! (ରାଗି ଗୁହିଁଲା)

ବିଜୟା—(ଇନ୍ଦ୍ରୀ ହାତ ଧରି) ତୁମେ ରାଗିଲ ଭାଇ, ମୋ ଉପରେ ? ବୋଉ ମରିଗଲାବେଳେ ତୁମକୁ କଅଣ କହି ଯାଇଥିଲା, ଭୁଲିଲ ?

ଜୟନ୍ତୀ—ନାଇଁ, ନାଇଁ (ବିଜୟଙ୍କ ଅଧର ଧରି), ମୋର ଭୁଲ୍ ହୋଇଛି ବିଜ, ତତେ ଆଉ କେବେ ଦୁଃଖ ଦେବି ନାହିଁ ।

ବିଜୟ—କେତେବେ ? ଛାଇ, ବାପାଙ୍କ କଥା ନ ରଖିଲେ ତାଙ୍କ ମନ ଦୁଃଖୀ ହେବ । ଅନନ୍ତ ବାବୁ—ଯେଉଁ ସୁଖବର ଦେଇଛି, ଜବାବଟା ତୁମଠାରୁ ପାଇ ହସିବା କାନ୍ଦିବା ସେ ବୁଝିଲେ । ଅଚ୍ଛା, ମୁଁ ପଢ଼ କହେ ସୁସମ୍ବାଦ……

ଜୟନ୍ତୀ—(କାତର ହୋଇ ଚାହିଁ) ବିଜ !

ବିଜୟ—(ଟିକିଏ ରହି, ହସି) ହୁଁ, ତା ପରେ—ହଁ, କଅଣ କହିବାର କହ । କହିବ, ନାଁ—ମୁଁ କହିବି ?

ଜୟନ୍ତୀ—ତୁ କଅଣ କହିବୁ ଦେଖି କହିଲ ?

ବିଜୟ—ମୁଁ ଯଦି କହେଁ ବଞ୍ଚିର ଛାଇ ଆଉ ବାହା ହେବେ ନାହିଁ,

ଜୟନ୍ତୀ—ମାନେ ?

ବିଜୟ—ମାନେ ? (ଝରକା ପାଖକୁ ଦୌଡ଼ିଯାଇ ସ୍କ୍ରିନ୍ କାଢ଼ି ଚାହିଁ) ନୂଆବୋହୂ, ନୂଆବୋହୂ, ଏରେ ? ହୁଁ, ଫେଏର୍ ଲଜ ? ଅଚ୍ଛା (ଘରୁ ଭିତରକୁ ଦୌଡ଼ ଚାଲିଗଲା । ଅନନ୍ତ ଓ ଜୟନ୍ତୀ ଚାହିଁ ରହିଲେ) ।

# ଚତୁର୍ଥ ଅଙ୍କ

## ପ୍ରଥମ ଦୃଶ୍ୟ

( ଜମିଦାରଙ୍କ ଶୋଇବା ଘର )

[ ଜମିଦାର, ସ୍ୱର୍ଗୀୟ ପତ୍ନୀଙ୍କ ଫଟୋକୁ ଗୁହିଁ ରୁମାଲରେ ଫଟୋ ପୋଛୁଥିଲେ । ରତ୍ନକୁ ଧେନ ବିଜୟାର ପ୍ରବେଶ ]

ବିଜୟା—ହେଇଟି ବାପା !

ଜମିଦାର—କିଲେ ମା, 'ଅତ' କିଲେ ?

ବିଜୟା—ଅଜା ତାହାନ୍ତି ବୋଲି ମୋତେ ବସାଇ ଉଠାଇ ଦେଲ ନାହିଁ । ଖବରକାଗଜଟାଏ ପଢ଼ୁଥିଲି ଯେ—

ଜମିଦାର—ହଇଗୋ ମିସ୍ ଅତବାଲା, ତମେ ସବୁ ନାଚ ଗୀତ ସବୁ ଶିଖିଚ ? ତମକୁ ଗୋଟାଏ ଥିଏଟରବାଲାଙ୍କୁ ଭିଡ଼ିଦେବା ।

ରତ୍ନ—ତମେ ଶିଖେଇଲେ ଯେମିତ ମୁଁ ଯାଇଚ ।

ଜମିଦାର—ଅଲେ, ନାଇଁମ, ଅ, ଗାଇଲି ଖଣ୍ଡେ ଗୀତ ଦେଖି ।

ରତ୍ନ—ଅଲ ? ମୋତେ ଆସିବ ନାହିଁ ।

ବିଜୟା—କୁ, ଯେମିତ ଗୋଟାଏ କଅଣ ?

ଜମିଦାର—ତାହାହେଲେ ମୁଁ ତୋ ଅଜା ହେବ ନାହିଁ ।

ରତ୍ନ—(ବିଜିକୁ) କଅଣ ଗାଇବି ମାଉସି ?

ବିଜୟା—( ଗୀତ ପଦ କହିଦେଲେ )

ରତ୍ନ—ସେଥିରେ ତ ନାଚ ଅଛି !

ବିଜୟା—ହଉ, ନାଚୁନଇଁ ?

ଜମିଦାର—ସତେ ତ, ମୁଁ ତୋ ନାଚ ଦେଖି ନାହୁଁ ।
ଭୂତ—( ଉଠି ପୁଣି ବସିପଡ଼ିଲ )
ଜମିଦାର—ଦେଖ୍, ମୋ କଥା ନ ରଖିଲେ ମୁଁ ତମ ଘରକୁ ଯିବି
 ନାହୁଁ, କି ତୋ ଅଜା ହେବ ନାହୁଁ, କି ତୋତେ କଥା
 କହିବ ନାହୁଁ ।
ଭୂତ—ମାଜୁସି, ଘୁଙ୍ଗୁର ?
( ବଜିଯ୍ୟା ଘୁଙ୍ଗୁର ଆଣି ଭୂତ ଗୋଡ଼ରେ ବାନ୍ଧି ଦେଲ )
(ଭୂତ ଗୀତ ଗାଇ ନାଚିଲ)
ଜମିଦାର—(ବଜିକୁ) ଦେଖ୍, ଦେଖ୍ ମା, ଭୂତକୁ ଦେଖ୍—
 ( ଇତ ମଧ୍ୟରେ ବିପିନ ଗୁମାସ୍ତା ଆସି ଉଣ୍ଡିଛି ବାହାଁ
 କାଗଜପତ୍ର ଧର; ଜମିଦାର ଦେଖିଲେ ତାକୁ; ଭୂତର
 ନାଚ ବନ୍ଦ ହୋଇଗଲା ତାକୁ ଦେଖି )
ଜମିଦାର—(ଭୂତକୁ) କିରେ, ନାଚ ବନ୍ଦ କରିଦେଲୁ ଯେ ?
ବଜିଯ୍ୟା—ନାଇ ମାଙ୍କିଲ ତାକୁ ନାଁ କଅଣ ?
ଜମିଦାର—ଓ, ଗୁମସ୍ତାଙ୍କୁ ଦେଖି ? ଅଚ୍ଛା, ବେଶ୍, ବେଶ୍; ଭୂତକୁ
 ମୋର ଖୁବ୍ ପସନ୍ଦ ହେଲା । ଅନେ ତା ବାପାଙ୍କର ଭାବନା
 ନାହିଁ ବର ଖୋଜିବାକୁ ।
ଭୂତ—ଉଃ, ଏଇ ବୁଢ଼ା ବରଟାକୁ ( କହୁ ଦୌଡ଼ି ପଳାଇଲା ) ।
ବଜିଯ୍ୟା—ରହ ରହ, ପଳାଉଛୁ କୁଆଡେ—ଘୁଙ୍ଗୁର ପୁଡ଼ାକ ଗୋଡ଼ରେ
 ଅଛି ଯେ । (ଉଠି ଚାଲିଗଲା)
 ( ଗୁମାସ୍ତା ଆସି କାଗଜ ପେଟ୍ ଭଲ ଜମିଦାରଙ୍କ ଆଗେ )
ଜମିଦାର—(ଦେଖି) ତୋଟେ ଅକଲ ନାହିଁ ତମର, ଏଇଠା ତମ-
 ମାନଙ୍କ ଘର ବାହାଘର ନୁହେଁ ଯେ, ପାଞ୍ଚ ପଚିଶରେ କାମ
 ଚଳିଯିବ ?

ଗୁମାସ୍ତା—ଆଜ୍ଞା ହଁ ।

ଜମିଦାର—କଅଣ ଆଜ୍ଞା ହଁ ?

ଗୁମାସ୍ତା—ଆଜ୍ଞା, ସେଇକଥା କହୁଚି ପରା !

ଜମିଦାର—କହୁଚ ତ, ଅଦାୟ କାହିଁ ? ଆମର ଏଇ ଘରେ ତ ଫେର୍ ଦାହାଘର ହୋଇଚି ? ଆମର ଗୋଟାଏ ଦାହାଘର ମାନେ, ଇଲାକାର ପାଞ୍ଚ ବରଷର ଅଦାୟ, ଏକା ଥରକେ ଘରକୁ ଆସିବ ।

ଗୁମାସ୍ତା—ଆଜ୍ଞା ହଁ ।

ଜମିଦାର—(ରାଗି) ଫେରେ ସେଇ ଆଜ୍ଞା ହଁ !

ଗୁମାସ୍ତା—ଆଜ୍ଞା ହଁ, ସେମିତି ହୁଏ ।

ଜମିଦାର—ସେମିତି ହୁଏ ତ ଜାଣି । ଆଜ ତମେ କହୁଚ କଅଣ ? ଇଲାକା ଉପରୁ ଯେତେବ—

ଗୁମାସ୍ତା—(କାଗଜ ଉଲଟାଇ ତରତର କରି କହୁଲେ) ଆଜ୍ଞା ସର-ପୋଖରୀ ମୌଜାରୁ ତହସିଲଦାର ପଠାଇଛନ୍ତି ଟ୧୪୨ଏ ।

ଜମିଦାର—ସରପୋଖରୀ ମୌଜାରୁ ମୋଟେ ଏଇ ଅଦାୟ ? ବଡ଼ ମୌଜା ସେଇଟା, ହଜାର ଟଙ୍କା ମିଳୁଛି ପଛେ ହେବା ଉଚିତ । ଘରପିଛା ହେଲେ ଲେଖାଏଁ ମାଗଣି ବସିଚି ?

ଗୁମାସ୍ତା—ମୁଁ ତ କହି ପାରିବି ନାହିଁ ।

ଜମିଦାର—ସେ ଇଲାକା ତହସିଲଦାରଙ୍କୁ ତଲବ କର, କାଲି ଭିତରେ ଆସି ମୋ ସଙ୍ଗେ ଦେଖା କରିବେ । ଯା ଏଇକ୍ଷଣି ହୁକୁମନାମା ଲେଖିଆଣ ।

ଗୁମାସ୍ତା—ଆଜ୍ଞା ! (ଚାଲିଗଲେ)

ଜମିଦାର—(ବେତେଗୁଡ଼ାଏ ଲମ୍ବା ଲମ୍ବା ଖାତା ଉଲଟାଉ ଉଲଟାଉ) କିଏ ଅଛୁ ରେ ? ବଟେନ !

( ନେପଥ୍ୟରୁ "ଅଜ୍ଞା" ବୋଲି କହୁ କାଗଜ କଲମ ଧରି ପୁଣି ଅସିଲେ ଝଡେନ )

ଜମିଦାର—( କଣ୍ଟକାଳ ପରେ କାଗଜରୁ ମୁହଁ ଉଠାଇ ) ହିଁ: କଲିକତା ଛାଡି ଗଲା ?

ଗୁମାସ୍ତା—କଲିକତା ?

ଜମିଦାର—ହଁ, ଟି-ପାର୍ଟି (Tea party) ଲଗି—ମନେ ନାହିଁ ଟି ? ମୁଁ ଜାଣେ।

ଗୁମାସ୍ତା—ଅଜ୍ଞା, ନାଁ !

ଜମିଦାର—ଅଜ୍ଞା ନାଁ, ମୁଁ ଜାଣେ ନାହିଁ ବୋଲି କହୁଚ ?

ଗୁମାସ୍ତା—ଅଜ୍ଞା, ଚିଠି। ହେଇଛି। (ପକେଟରୁ କାଢ଼ି ଦେଖାଇଲେ)

ଜମିଦାର—ଯାଅ, ପଠେଇ ଦିଅ, ସାଙ୍ଗେ ସାଙ୍ଗେ। ୩୦୦ ଲୋକଙ୍କର ବରାଦ। ମନେ ରହୁବ ? ନାଁ, ପେରେ—

ଗୁମାସ୍ତା—( ଗୁଲି ଯାଉ ଯାଉ ) ଅଜ୍ଞା !—

ଜମିଦାର—ଅଉ ସେ ହୁକୁମନାମାଟା ଅଣ ବେଗେ,

( ବଜାୟ୍ଯା ଅସିଲ )

ଜମିଦାର—'ଅତ' ଗଲଣି କଲେ ମା ?

ବଜ୍ଯା—ହଁ ବାପା।

ଜମିଦାର—ଅଚ୍ଛା, ତୁ ଦେଖିଲୁ, ଏଇ ନେକ୍‌ଲେସ୍ (necklace) up to date—Aristrocrat fashion ହେଇଲେ ଚଳିବ ତ, ? ଅଲିଭାଳ୍‌ର୍—ମାଇନ—ଟବଶ୍—

ବଜ୍ଯା—କଅଣ ? କ ଅବୋହ୍ରୁ ଘାଇଁ ନାଁ ?

ଜମିଦାର—ହଁ, ନାଇଁ ତ ତୁ ବାଛ।

ବଜ୍ଯା—( ଗମ୍ଭୀର ଭାବେ ) ଦେଖିବ।

ଜମିଦାର—ଓ, ( ହସି ) ତୋର ଗୋଟେ ଏମିତ ହେବା ଦରକାର, ନା ? ତୋ ନୂଆ ବୋହୂ ପାଇଁ ଟଙ୍କା ହେବ; ତଙ୍କା ପାଇଁ ହେଲା ନାହିଁ—ଯାହୁଁ ବା । ବୋଲ୍—

ବିଜୟା—ନାଁ ବାପା, ଏତେ ଯେତେ ମନ ମୋର ନୁହେଁ । ଗହଣା ଗଢ଼ା ହେବ, Tea party (ଟି-ପାର୍ଟି) ନାଚ ତାମସା ହେବ, ସବୁ ଅପଣ କରବେ—

ଜମିଦାର—ତା'ତ ନିଶ୍ଚୟ । ମୋର ପୁଅ ତ ଆଉ ଦୁଇଥର ବାହା ହେଉ ନାହିଁ, ଅଜି ଯେତେବେ ବୋଉ ତୋର ଥାଆନ୍ତା, ବସ୍ତର ସୀମା ରହନ୍ତା ନାହିଁ—ଆନନ୍ଦରେ ଗୋଡ଼ ତାର ତଳେ ଲାଗନ୍ତା ନାହିଁ ।

(ଫଟୋ ଅଡ଼କୁ ଚାହିଁଲେ)

ବିଜୟା—ହଁ, ବୋଉ ଥିଲେ ଯେ କଅଣ ହୁଅନ୍ତା ସେ କଥା କି କହିବ ?

ଜମିଦାର—ଆନନ୍ଦ ହୁଅନ୍ତା ନାହିଁ ? ଏତେବଡ଼ ଜମିଦାର ଘର ସାଙ୍ଗରେ ସାନ୍ଦ ବାନ୍ଧିବାକୁ ଯାଉଛି ମୁଁ—ନିଶ୍ଚୟ ବୋଉ ତୋର ଆନନ୍ଦ ହୁଅନ୍ତା ।

ବିଜୟା—ହଁ, ଘର ବଡ଼—ସତ ବାପା ! ବାକି, ମନ ବଡ଼ ହେଲେ ସିନା ?—ଅମେ ତ ଆଉ ବଡ଼ ଘର ନେଇ ସଂସାର କରିବା ନାହିଁ ?

ଜମିଦାର—(ହସି) ତୁ ଭୁଲ୍ ବୁଝୁଛୁ ଝିଅ ! ବଡ଼ ଘରେ ଛୋଟ ମନ ଅସିବ କେଉଁଠୁ ?

ବିଜୟା—ଏଇଟା କଅଣ ଅସମ୍ଭବ ? ଭାଇଙ୍କ ମନକୁ ଚାହିଁ ନୂଆ-ବୋହୂଟିଏ ହେଲେ ସିନା ?

ଜମିଦାର—( ହସି ) ଓଃ, ଏଇକଥା ? ସେ ସବୁ କଥା ଭାବିବାକୁ ନାହିଁ ବାବା ! ତୁ ଜାଣୁ ପ୍ରତାପପୁର ଭୂୟାଁ ଘର ଧନ, ମାନ, ସବୁଥିରେ ଅମଠୁଁ ଯଥେଷ୍ଟ ବଡ଼ । କନ୍ୟାଟି ମାଟ୍ରିକ୍ ପାଶ୍ କରିଛି, ଚେହେରା ବି ଶୁଣିଲି ଖୁବ୍ ସୁନ୍ଦର । ପିଲାଟିକୁ ଅମ "ଅଛ"ର ବାପା ରସାନନ୍ଦ ବାବୁ ଦେଖିଛନ୍ତି, ଜାଣୁ ?

ବିଜୟ—ହୋଇଥିବ, କନ୍ୟା ରସାନନ୍ଦବାବୁଙ୍କ ଆଖିକି ସୁନ୍ଦର ହୋଇପାରେ, ପ୍ରତାପପୁର ଜମିଦାର ଘରର ଧନ, ମାନ, ଆପଣଙ୍କ ଆଖିକୁ ଖୁବ୍ ବଡ଼ ହୋଇପାରେ—ସେ ତ ଅଲଗା କଥା ।

ଜମିଦାର—ଅଲଗା କଥା, ତୁ କଅଣ କହୁଚୁ ବାବା ? ଏଇଥକରେ ତ ମୋର ଆଉ ସବୁଯାଉ ନାହିଁ । ଏତକ ବେଳୁ ମୋତେଇ ଫେର୍ ତୋ ପାଇଁ ବାଟ ଠିକ୍ କରିବାକୁ ପଡ଼ିବ ।

ବିଜୟ—ସେ ତ ବହୁତ ଦୂରରେ ।

ଜମିଦାର—ଦୂରରେ ଆଉ କଅଣ ? ମୁଣ୍ଡକୁ ମୁଣ୍ଡ ପକାଇବାକୁ ହେଲେ ତ ଫେର୍ ସେମିତି ଖରଚ ଦର୍କାର !

ବିଜୟ—ଖର୍ଚ୍ଚର ତ ଗୋଟେ ସମୟ ଆଉ ସୀମା ଅଛି ବାପା ! ଦେଖିଲ—

( କାଗଜଟା ବଢ଼ାଇ ଦେଲା )

ଜମିଦାର—( ଧରି ପଢ଼ି ) ଓ, ଏ ଗୋଟେ ଓଡ଼ିଆ କାଗଜ, ଯାହାର ଗୋଟେ ମତ......ପାଞ୍ଚଟା ଲୋକ ଏକାଠି ହେଲେ ଯେ ଲେଖେ ଗୋଟା ଏ ବିଷ୍ଟେ ସଭା......ଗୁଡ଼ ଗୁଡ଼—ଏଗୁଡ଼ାକ, ତୁ ପଢୁ କାହିଁକି ? ମୁଁ ଏ ସବୁ କଣେ କାହିଁକି ତୁ ଜାଣୁ ? ମାନେ, ଖାଲି ସମୟ କିଲ୍ (kill) କରିବା ପାଇଁ, ଛତ ଗଣ୍ଡାକ ପାଇଁ ଥୋକେ କାଗଜବାଲା ସତକୁ ମିଛ ମିଛକୁ

ସତ ଲେଖି ଲୋକଙ୍କ ଆଖିରେ ଧୂଳି ଦେଇ ବସୁନ୍ଧରା, ଆଜି, ଟଳଟେ ଏଗ୍ଲାସ ଓଲ୍‌ଟର ଦେଇ କଣନ୍ତ୍ରା। ଯା, ତୁ ଯା, ଏଇ କ୍ୟାଟଲଗ୍‌ଟା ନେଇ ଯା, ଭାଇଙ୍କ ଦେଖାଇ ଗହଣା ଗୁଡ଼ା ପସନ୍ଦ କରିଯିବା—ଧନ ଆଜ୍ ନାହିଁ ଯେ, କାରିଗର ତ ଫେର୍ ଗଢ଼ିବ—ନେ, ଯା—

ବିଜୟା—ମୁଁ କହୁଥିଲି କଅଣ କି, ଭାଇଙ୍କର ମତ ଟିକିଏ—

ଜମିଦାର—ଅରେ, ତା ମୁଁ ବୁଝିଲି, ସେଇଥି ତ ମୁଁ ଚାହୁଁଛି; ମୁଁ ତ ଆଉ ଚୈର ଖାନ୍ତୁ ନାହିଁ ତାଙ୍କୁ। ତା'ର ପସନ୍ଦଟା ଅନ୍ତତଃ—

ବିଜୟା—ମୁଁ ସେ କଥା କହୁନାହିଁ। (ଗୁମାସ୍ତା ଆସିଲା)

ଜମିଦାର—ଅଚ୍ଛା, ତୁ ଆଗେ ବୁଝିଅ। ତା ପରେ—(ଗୁମାସ୍ତା ପ୍ରତି) ହଁ, ଆଣିଲ ?

ଗୁମାସ୍ତା—( ଟେବୁଲ୍‌ରେ ଖଣ୍ଡେ ଥୋଇ କଲମ ବଢ଼ାଇ ଦେଲା, ଜମିଦାର ଦସ୍ତଖତ୍ କଲେ।)

ଜମିଦାର—ଆଜି, ଏହିକ୍ଷଣି ଲୋକହାତେ-ସାଙ୍ଗେ-ସାଙ୍ଗେ ପରଓ୍ୱାନା ପଠାଅ। (ବିଜୟାଙ୍କୁ ଚାହିଁ) ତୁ ଗଲୁନାହିଁ ମା, ଯା ବୁଝିଅ। (ଗୁମାସ୍ତା ଚାଲିଯାଉଥିଲା, ତାଙ୍କୁ ପୁଣି ଡାକି) ହଁ, ଶୁଣ, ଶୁଣ, ଗୋଟେ ଲୋକ ପଠେଇ ଦିଅ ଓଡ଼ିଶା ଆର୍ଟ ହାଉସ୍‌କୁ—ଜଣେ ଭଲ କାରିଗର ଦରକାର, ଅର୍ଡର ନେଇଯିବ।

ଗୁମାସ୍ତା—ଆଜ୍ଞା ! (ପ୍ରସ୍ଥାନ) (ବିଜୟା କିଛି ନ କହି ଚାଲିଯାଉଥିଲା)।

ଜମିଦାର—ଅରେ, କ୍ୟାଟଲଗ୍‌ଟା ନେଇଗଲୁ ନାହିଁ—ଚାଲିଗଲୁ ? ତମମାନଙ୍କର କେମିତି ଯେ ମନ—ନେ, ନେ (ଉଠି, ହାତକୁ ବଢ଼ାଇ ଦେଲାବେଳକୁ ବିଜୟା ଚାଲିଯାଉଥିଲା କହୁ କହୁ।)

ବିଜୟା—ସେଇଟାକୁ କାହା ହାତେ ଭାଇଙ୍କ ପାଖକୁ ପଠାଇ ଦେବେ ଆପଣ।

ଜମିଦାର—(ଟିକଏ ଗୁହାଁ ) ହୁଁଃ ( ବିରକ୍ତ ହେବାପର ଫେରି
ଅସିଲା ବେଳକୁ ଦେଖିଲେ ଦାମା) କଅଣ ସେ—ଏମାନେ,
(ଦାମା ପ୍ରତି) କିରେ, ଖବର ନେଲୁ କିଛି ?

ଦାମା—(ସଙ୍କୋଚଭାବେ) ନାଁ—

ଜମିଦାର—ନାଁ—ନାଁ ମାନେ ?

ଦାମା—ଗାଆଁ ସାରା ଖୋଜିଲି ଅଜ୍ଞା—ଦୁଅରେ ତାଲ ଜାଲ ବନ୍ଦ
କୁଆଡ଼େ ଗଲା, କେହି କିଛି ଜାଣନ୍ତି ନାହିଁ ।

ଜମିଦାର—ତୁ ତାକୁ ଠିକ୍ ଏଠିକି ଅଣିଥିଲୁ ତ ?

ଦାମା—ଅଜ୍ଞା ହଁ, ଖାଲି ଅଣିଥିଲି ! ଅଣି ଘରେ ଏହାବେଳେ
ତାଲଦେଇ—

ଜମିଦାର—ତା ହେଲେ ?

ଦାମା—କେମିତି ଯେ କୁଆଡ଼େ ଗଲା—ତାଲ ସୁଦ୍ଧା ତାଲା ବନ୍ଦ ଅଛି
ଘର ଶୂନ୍ । ମୋତେ ଲାଗୁଛି ସେ କଅଣ କମିଅଁ ଜାଣିଛି ।

ଜମିଦାର—କିମିଅଁ ?

ଦାମା—ଅଜ୍ଞା ହଁ, ତା ନ ହେଲେ ସାନ ବାବୁଙ୍କ ପରି ଯୋଗା
ବାବୁ—

ଜମିଦାର—ଚୁପ୍ ! କିମିଅଁ ଜାଣିଚି ସେ, ନାଁ କିମିଅଁ ତୁ କରୁଛୁ
ମୋ ଅଗରେ ? ଯା, ଦେଖ ତାକୁ, ଖୋଜିକରି ଅଣି
ମୋତେ ଖବର ଦେ—କହିଲୁ :—ଆଣି ଘରେ ତାଲା
ବନ୍ଦ କରି ରଖିଥିଲି । ଅଜ ସେ କଅଣ ବନ୍ଦ ଘରୁ ଉଭେଇ
ଗଲା ? ଯା, କୋଉଠି ତାକୁ ରଖିଚ, ମୋତେ କହିବାକୁ
ହବ ତତେ ।

ଦାମା—ଅଜ୍ଞା, ମୁଁ—

ଜମିଦାର—ଚୁପ୍ ରହ ବଦମାସ୍ ! ଖେଳୁଛୁ ମୋ ସାଙ୍ଗେ ? ନାଁ ? ଯା ହେଇଚି, ସବୁ ତୋର ସଲ୍ଲାରେ ହେଇଚି । ଯା, ଜଲ୍ଦି ଖବର ଅଣ, ସେ କୋଉଁଠି ଅଛି ।

ଦାମା—ହଜୁର ମାଆ ବାପା—ମୁଁ କମା ଜାଣିନାହିଁ ; ମୋତେ ଯୋଉଁ ନିୟମ ଦେବେ—

ଜମିଦାର—ଚୁପ୍ ଚୁପ୍, ହଲ୍ଟ—ବଦମାସ୍ ? ଯା ଜଲ୍ଦି । ଆଜି ମୋତେ ଖବର ଦେ ସେ କୋଉଠି, ନାହିଁତ ଏ ଦୁଆରେ ଦାନା ନାହିଁ ତୋର ।

ଦାମା—ଆଜ୍ଞା ! (ଭୟରେ ଥରିଲା)

ଜମିଦାର—କିଛି ମୁଁ ଶୁଣିବାକୁ ଚାହୁଁନାହୁଁ, ଯା, (ଦାମା ଚାଲିଗଲା) (ଗୋଟିଏ ବନ୍ଦ ଚିଠି ଧରି ଗୁମାସ୍ତା ଆସି ଚିଠି ବଢ଼ାଇ ଦେଇ ଠିଆହେଲା)

ଜମିଦାର—(ବିରକ୍ତ ହୋଇ) କଅଣ ? ସେ କଅଣ ? ତୁମର ପେପର୍ କଅଣ ?

ଗୁମାସ୍ତା—ଆଜ୍ଞା, ଏଇଟା—

ଜମିଦାର—ହଁ ? କଅଣ ସେଇଟା ?

ଗୁମାସ୍ତା—ଚିଠିଟାଏ କଅଣ ଲଛମନିଆ ଟିଅଦା ନେଇ ଘର ଅସିଛି, ହରିପୁର ତହସିଲଦାର ପଠାଇଛନ୍ତି—ଜରୁର ଚିଠି ।

ଜମିଦାର—ହଁଙ୍କା ଦେଖିଲ ଅଛି ?

ଗୁମାସ୍ତା—ନାହିଁତ—

ଜମିଦାର—ଆଉ କଅଣ, ଖାଲି ଚିଠିଟା ? କଅଣ ଲେଖିଚି ଦେଖି ? (ଚିଠି ଚିରୁ ଚିରୁ) ଜାମତ ଆଉ କାଟୁନାହୁଁ, ତହସିଲଦାର ଚାକିରି ପାଇ ଇଲକା ଉପରକୁ ଗଲେତ ବାପର କୁଳକି

ଭୁଲିଗଲେ । (ଗଠି ପଢ଼ି) ରି ? revolution ?-ମେଲି ?
ଅଚ୍ଛା, ଦିଏ ଏ ଗଠି ଅଣିଚି, ତାଇଁ ଯେ ଲୋକ ? ( ଉଠେ
ଖୁବ୍ ଶୀଘ୍ର ଗୁଲିଗଲେ )

ଗୁମାସ୍ତା—(ଛାଟକା ହୋଇ) ଯେ ପେଟରେ ବଅଶରେ ବାପା !

---

## ଦ୍ୱିତୀୟ ଦୃଶ୍ୟ

( ସରପୋଖରୀ ଗ୍ରାମପଥ )

[ ଖୋଲ କରତାଲ ନେଇ ସ୍ୱାମୀଙ୍କ । ତେତେ ଜଣ ନାରୀ କର୍ମୀ ବାଳକବାଳିକା ଓ ଗ୍ରାମବାସୀ ସେବା ସଦନଙ୍କଠି ମୁଷ୍ଟିଭିକ୍ଷା ସଂଗ୍ରହ କରୁଛନ୍ତି । ସେମାନେ ଗାଉଛନ୍ତି, ସମୂହ ସଙ୍ଗୀତ । ]

ଗୀତ

ମରଣର ଚିତା ମନ୍ଥନ କରି ଅକାଳ ମଡ଼ା ଏ ଦୁଠରେ ଚେଇଁ
ହାଡ଼ ଚମ ଯେନି କଙ୍କାଳ ଆଧ ମରକି ଓଲ୍ଟା ଜଳିବାପାଇଁ ?
କିଏ କହେ ତୁମେ ଭିଖାରୀ ବୋଲିରେ,
ଯାଯାବର ବୋଲି କହୁଛି କିଏ ?
ରଙ୍କା, ସାହୁକାର ତୁମେତ ଗଢ଼ିଛ, ଘଡ଼ା ଘୋଡ଼ା ଅଜ ବସିଛି ଯିଏ,
ତୁମ କରଣୀରେ ଗୁରଣା ମୂଲରେ,
ଏଇ ଘରଗଡ଼ା ମନେ କି ନାହିଁ । ୧ ।
ମାଟି ଫାଟେ ଶବ, ତୁମେତ କାଢ଼ିଛ, ମାଆର ପେଟରୁ ମାଣିକ ହୀରା
ତୁମେ ଭୋକେ ମର, ଭାତ ମୁଠାକର ଆଶା ନାହିଁ ଗିଟି ଦେଉଛି ଗରା ।
ସେଇ ହାତଗୋଡ଼ ଅଟୁଟ ତୁମର,
ଜନମ ତୁମର ଖାଟିବାପାଇଁ । ୨ ।

ତଳ ବୁଡ଼ିଯିବ, ଚହଲ ପଡ଼ିବ, ଅନ୍ଧାର ଟେମ୍ବରେ ଅଲ୍ଲିଅ ଘର
ହେମ ସିଂହାସନ ଥର ଉଠିବରେ, ତୁମେ ଯେବେ ଥରେ ଦେବ ହୁଙ୍କାର
ଦୁନିଆଁ ଆଖିରେ ଅଙ୍ଗୁଠି ହଲାଇ
ବଡ଼ ହବ ତୁମେ ଦେବ ଦେଖାଇ । ୩।

ଚମକି ପଡ଼ନା ବାଟୋଇରେ ଦେଖି, ସନ୍ଧୀ କଗୁଆ ଏଇ ନଅର,
ଜଗି ସେ ରହିଛି ଠିଅ ଖରଖିଅ, ଯେତକ ତୋହର ରକତ ଝାଳ,
ତୋ ଲହୁ ଟୋପେକ ଦୁଧ ଖିଇକର, ଖାଇ ସୁକୁମାର ଅଛି ଘୁମାଇ ।୪।
ଝୁଡ଼ ବାଡ଼ ନାଇଁ, ଅଖି ପାଳ ନାହିଁ, ସାଉକାର ଘର ଏଇ କଥାଗ୍ରେ
ସୁଧ ଉବଣାକୁ ହାଲ ହେଲପର, ମିଶାଇ ଗାଆଁ ର ଯେତେ ଟୋକଗ୍ରେ
ଗାଲେ ହାତ ଦେଇ, କଲକା ସମାନ,
କେତେ କାଳ ଅଉ ଥିବୁରେ ଗୁହି ? । ୫ ।

( ଜମିଦାରଙ୍କ ସରପୋଖତ୍ରୀ ତହସିଲଦାର ଆସି ଠିଅହୋଇ ଦେଖିଲେ, ତାପରେ କହିଲେ )

ତହସିଲଦାର—ବନ୍ଦ କର ଏ ସବୁ ଗୋଳମାଳ, ବନ୍ଦ କର ।

( କେହି ଶୁଣିଲେ ନାହିଁ )

ହେ—ଅରେ,କହୁଛିପର ଏ ସବୁ ବନ୍ଦ କର ବୋଲି,ଶୁଭୁ ନାହିଁ ?

ପ୍ରଥମ—ସେବାସଦନ ଲାଗି ଭିକ୍ଷାମାଗି ବୁଲୁଛୁ । ଗୋଳମାଳ ତ କିଛି କରୁନାହୁଁ, ବନ୍ଦ କରିବୁ କଣ ?

( ଭଜନ ପଧାନ ଆସି ସ୍ୱାମୀଜିଙ୍କ ଗୋଡ଼ତଳେ ମୁଣ୍ଡିଅ ମାର ପାଞ୍ଚଟି ଟଙ୍କା ଦେଲା )

ଭଜନ—ଏଇତକ ମୋର ସେବାରେ ଲଗେଇ ଦେବେ ଅଜ୍ଞା !

ସ୍ୱାମୀଜି—(ହାତ ଟେକି ଅଶୀଷ ଦେଇ ରମା ଓ ଅଉ ଜଣେ ସ୍ତ୍ରୀଲୋକ ଧରିଥିବା ଝୁଲି ଭିତରେ ଟଙ୍କା ପକାଇ ଦେଲେ ହସି ହସି)

ତହସିଲଦାର—ସ୍ୱାମୀଜି, ମୁଁ ଅସିଛୁ ପଚାରିବାକୁ—

ସ୍ୱାମୀଜି—( କଟାକ୍ଷ ଦେଇଲେ, ଗୀତ ବାଜା ବନ୍ଦ ହୋଇଗଲା )
କଅଣ ବାବା ?

ତହସିଲଦାର—ପଚାରୁଥିଲି ଏ ସବୁ ଗୋଳମାଳ ତୁମେମାନେ ବନ୍ଦ କରିବ କି ନାଁ ? ରାଜସ୍ୱ ଆଦାୟ ହେବାକୁ ନାହିଁ; ଜମିଦାରଙ୍କ ପୁଅ ବାହାଘର; ଗାଆଁବାଲା ମାଗଣା ଦେବାକୁ ନାହାନ୍ତି; ଆଉ ପଞ୍ଚାଏ ମରଦ ମାଇକିନିଆଁ ଏକାଠି ହୋଇ; ମେଳବାନ୍ଧ—

ଭଜନ—ମେଳ ? ତହସିଲଦାର ବାବୁ, ଯାକୁ କଅଣ ମେଳ କହନ୍ତି ?

ତହସିଲଦାର—ଆଉ କଅଣ କହନ୍ତି ? ଗୋଟେ ମେଣ୍ଟବାନ୍ଧି କହୁଛ କଅଣ ନାଁ, ମାଗଣା ଦବୁନାହୁଁ । କର୍ତ୍ତ ? ଏମିତ ତମ ବଡ଼ବଡ଼େ ଦେଇ ଆସିଛନ୍ତି ନା, ତମେ ଆଜି ନୂଆ ଦେଲ ?

ଭଜନ—ଦେଇଥିବେ, ସେ ଅଲଗା କଥା; ତାଙ୍କର ଥିଲା—ସେ ଦେଉଥିଲେ—ଆଜିତ ଶହ ଶହ ଲୋକ ପେଟ ଭୋକରେ ମରୁଛନ୍ତି ! ଘରେ ଘରେ ବାଢ଼ି ମରୁଛି; ଗାଈଗୋରୁ ପାଣ୍ଠୁଆ ବସନ୍ତରେ ଠିଆ ଶୋଇ ପଡ଼ୁଛନ୍ତି । ଜମିଦାର ଏତେବେଳେ ଦେଶକୁ ସମ୍ଭାଳି ନଅନ୍ତେ କଅଣ, ଉଲଟି ମାଗଣା ? କିଏ ଦବ ? କେଉଁଠୁ ଆଣିବୁ !

ତହସିଲଦାର—ଆଉ (ଫୁଲିକି ଠାରି) ଇଏ ଗୁଣ୍ଡା ହେଲାବେଳକୁ ? ଟଙ୍କା କଣ ଜନମ ହେଉ ପଡ଼ୁଛି ?

ଦ୍ୱିତୀୟ—ଏଇଟା ଦେଶଲାଗି, ଲୋକେ ବଞ୍ଚିବାପାଇଁ—ଯାହାର ଯାହା ମନ, ସେ ଦେଲା । ପେଟକାଟି ଆମର ଭାଇମାନେ ଦଉଛନ୍ତି; ଆମର ଭାଇ ଖାଉଛନ୍ତି—ଏ ପଇସାରେ ତ ଆଖି ! ମଟରକଣା

ହେଉ ନାହିଁ, ନାଚତାମସା ହେଉନାହିଁ, କି ବାଣ ଫୋଟଣୀ ହେଉ ନାହିଁ !

ତହସିଲଦାର—ତେବେ ତୁମେମାନେ ସବୁ ମାଗଣା ପାଉଣା ଦେବ ନାହିଁ ?

ଭଜନ—କୋଉଠୁ କିଏ ଦବ ?

ତହସିଲଦାର—ହୁଁ । ଏସବୁ ସ୍ୱାମୀଜିଙ୍କ ଶିଖାଣ । ଅଚ୍ଛା, ମୁଁ ଖବର ଦେଉଚି ଜମିଦାରଙ୍କ ପାଖକୁ ! ବେଳେ ଯାଉ ଫଳ ପାଇବ ଯେ !

ସ୍ୱାମୀଜି—ଭଲ କରିଚ ବାବା, ଜମିଦାର ନିଜେ ଥରେ ଆସି ତାଙ୍କ ପ୍ରଜାମାନଙ୍କ ଅବସ୍ଥା—

ତହସିଲଦାର—ଆଉ ତା ଆଗରୁ ତମକୁ ସବୁ କହି ଦଉଚି, ଭଲରେ ମାଗଣା ଆଦାୟ ନ ଦେଲେ, ମୁଁ ସେବାସଦନ ଫେବା-ସଦନ ଭାଙ୍ଗି ଛପର ଉଠେଇ ଦେବି । ଦେଖ ହେ ! ଗୋଟେ ସେବାସଦନ ନାଁ ଦେଇ, କୋଉଠୁ ଗୋଟାଏ ଶାସ୍ତ୍ରୀ ଖଣ୍ଡେ ଯୋଗାଡ଼ କରି ଲୋକଙ୍କୁ ଠକି ଟଙ୍କା ନେଇ, କୃଷ୍ଣଲୀଳା ଲଗିଚି— ? କଅଣ ନା ସ୍ୱାମୀଜି, ମଠ !! (ରାଗି ଉଠିଲେ)

୧ମ ଜଣ—ହିଁ ହିଁ, ମୁହଁ ସମ୍ଭାଳି କଥା କୁହ ତହସିଲଦାର ବାବୁ, ଲୋକଙ୍କୁ ଧମକେଇ ତଣ୍ଟି ଚିପିବା କାଳ ଆଉ ନାହିଁ । ତମ ହାତରେ କଅଣ ହଉଚି ତୁମେ କର । ସେବା ସଦନରେ ହାତ ଦେଲେ ଫେର କହୁ ଦଉଚି, ହାଡ଼ଗୋଡ଼ ଠାଆଁ ଠାଆଁ ହୋଇଯିବ ତମର । ଚାଲ ସବୁ ଆମ କାମରେ । ( କୀର୍ତ୍ତନ କରି ଚାଲିଗଲେ )

## ତୃତୀୟ ଦୃଶ୍ୟ

ବିଜୟାର ଘର ।

[ ମଝିରେ ଟେବୁଲ ଓ ଚୌକୀ ପଡ଼ିଛି । ସେ ଆଡ଼କୁ ପିଠି କରି ବିଜୟା ଏକ କଡ଼ରେ ଥିବା ହାର୍‌ମୋନିୟମ୍ ଧରି ଗାଉଚି ଗୀତ, ଗୀତ ମଝିରେ ଆସିଲେ ଜୟୀ—ବଡ଼ ବିଷଣ୍ଣ । ଧୀର ହୋଇ ବସି ଗୀତ ଶୁଣିଲେ । ବହିଟାଏ ଧରିଲେ, ମନ ଲଗିଲା ନାହିଁ—ବଡ଼ ଅନ୍ୟ-ମନସ୍କ । ବିଜୟାର ଜୟୀ ପ୍ରତି ଦୃଷ୍ଟି ନାହିଁ, ସେ ତା'ର ଗୀତରେ ଭୋଳ ]

ଗୀତ

ଗୋପନେ, ଗୋପନେ,

ଯେ ଫୁଲଟି ଫୁଟିଲା ବନେ

ମଉନ କଥା କହିଲା ମୋ କାନେ କାନେ, ମାନେ ମାନେ ।

ବହିଛି ସେ ରୂପ ଧରି, ମୋର ନିଦହରା ମରମେ-କାତରଣେ,

ଚେତନା, ଅଭିସାରସେ,

ସପନ ଦୃପ୍ତ ନୟନେ । ୧ ।

ମନ-ମାୟାବନ ହରିଣୀ ସେ ଛନ୍ଦ-ସାଥୀ

ମେଦୁର ଅକାଶେ ଚନ୍ଦ୍ରାବତୀ

ଫଗୁଣ ଫଗୁଅ ଫୁଲ୍ ଚହଲଦିଆ

ବଧୂର କୋଇଲି କୁହୁ ବଉଳସାହା

ଅଭୁଲି, ମହୁଲ ବନେ—ମହୁଆ ପବନେ ।

( ଗୀତ ଭିତରେ ଜୟୀ ପକେଟରୁ କାଢ଼ିଛି ସିଗାରେଟ୍ କେଶ୍ଟା । ପିଟାଇ ସିଗାରେଟ୍‌ଟେ କାଢ଼ି, ପୁଣି ସେଥିରେ ରଖି ବନ୍ଦ କରୁଛି—ସବୁ ଅନ୍ୟମନସ୍କଭାବରେ—କିଛିକାଳ ପରେ ଲୁହ ପୋଛୁଛିବା ଭଳି ହୋଇ

ଉଠି ଚାଲିଗଲେ । ସେଗାଟରେଟ୍ କେସ୍ ଭୁଲରେ ନେଇ ନାହାନ୍ତି ।
ବିଜୟା ଗୀତ ଗାଉଚି—ଲକ୍ଷ୍ୟ ନାହିଁ ତାର ଏ ସବୁକୁ)

( ପଥଶ୍ରାନ୍ତ ହେବାପରି ଅନନ୍ତ ଆସି ପହୁଞ୍ଚିଲେ ସେଇ ଘରେ )

ଅନନ୍ତ—ବିଜୟା !

ବିଜୟା—(ଗୀତ ବନ୍ଦକରି) ଓଃ, ଅନନ୍ତ ବାବୁ, କେତେବେଳେ ଆସିଲେ ?

ଅନନ୍ତ—ଏଇତ ଲମ୍ବେ ଲମ୍ବେ ଆସି ପହଞ୍ଚିଲି—ଗୋଡ଼ ହାତ ବି ଧୋଇ ନାହିଁ ।

ବିଜୟା—ପାଇଲେ ରମାକୁ ?

ଅନନ୍ତ—ନାଃ, ତା ମାମୁଘରକୁ ବି ସେ ଯାଇ ନାହିଁ । ସାଇ ବୋଲି ଆଉ ଗୋଟିଏ ଝିଅ, ରମା ସାଙ୍ଗ ସେ, ତାକୁ ତାଙ୍କ ଘରର ଗୁଡ଼ିବ ଦେଇ, ମାମୁଘରକୁ ଯାଉଚି ବୋଲି କହୁଚି ।

ବିଜୟା—ମାମୁଘରେ ବି ତ ନାହିଁ ବୋଲି କହୁଛନ୍ତି ଆପଣ ।

ଅନନ୍ତ—ହଁ, ମୁଁ ନିଜେ ଯାଇଥିଲି, ସମ୍ଭବ ଅସମ୍ଭବ ସବୁ ଠାଆ ତ ଖୋଜିଲି କୋଉଠୁ କିଛି ଖବର ମିଳୁ ନାହିଁ ।

ବିଜୟା—ଆଉ କଅଣ—

ଅନନ୍ତ—ତୁମେ କଅଣ ମନେ କରୁଛ, ଆତ୍ମହତ୍ୟା କଥା ? ନା, ଏତେଦୂର—

ବିଜୟା—ଏତେଦୂର, ସେତେଦୂର କଅଣ ଅନନ୍ତ ବାବୁ, ମୁଁ ନିଜେ ତାକୁ ବୁଝାଇ ସୁଝାଇ, ଏତେକରି ସେଦିନ ଭାଇଙ୍କ ପାଖକୁ ନେବାକୁ ଯାଉଚି, ଙ୍କରିବା ପ ଖରେ ଚିଞ୍ଚ କରାଇ ଦେବା— କରାଇବାକୁ ନେଲବେଳକୁ—

ଅନନ୍ତ—ଚାଲି ଯାଇଥିବ କୁଆଡ଼େ ।

ବିଜୟା—ମଫସଲିଆ ବୁଦ୍ଧି ତ ! କିଏ ଜାଣେ କଣ କରିଥିବ ? ଅଚ୍ଛା କହନ୍ତୁ ତ, ସେ ଫଟୋଇଲ ଅଗ କାହିଁକି ? କଥା ନାହିଁ, ବାର୍ତ୍ତା ନାହିଁ—

ଅନନ୍ତ—କଅଣ ମନରେ ଭାବିଥିବ । ହୁଏ ତ—(ଟେବୁଲ ଉପରେ ଜଳି ଛୁଞ୍ଚି ଯାଉଥିବା ସିଗାରେଟ୍ କେସ୍‌ଟାରୁ ଗୋଟା-ଟିକରେ ସିଗାରେଟ କାଢ଼ି ପୁଣି ସଜାଡୁଥାଏ, ଅନ୍ୟମନସ୍କ-ଭାବରେ )

ବିଜୟା—( ଅନନ୍ତଙ୍କୁ ତଦବସ୍ଥ ଦେଖି ) ହିଁ ହିଁ, ଖଣ୍ଡେ କହନ୍ତୁ, ଗୋଟାଏ ନୂଆ କଥା ଦେଖିଲି ଆଜି ।

ଅନନ୍ତ—(ହଠାତ୍ ଅପରାଧୀ ପରି କେସ୍‌ଟା ବନ୍ଦ କରି ଥୁଆଇ) ଛି, ମୁଁ କେବେ ଏ ସବୁର ଧାର ଧାରେ ? ଖାଲି ଟାଏ ଗୋଟେ ସେମିତି—

ବିଜୟା—ଓଃ, ସତକଥା, ସିଗାରେଟ୍ କେସ୍‌ଟା ତାହାହେଲେ ଅପଣଙ୍କର ନୁହେଁ ? ଦେଖି ଦେଖି (ହାତକୁ ନେଇ), ଓଃ, ଏଇଟା ତ ଭୟଙ୍କର, ଏଟିକି କିଏ ଆଣିଲା ? ହଠାତ୍ ମୋ ଟେବୁଲ୍ ଉପରେ ଅପଣଙ୍କ ହାତରେ ଦେଖି ମନେକଲି, ଏଇ କେତେଦିନ ଗ୍ରାମ ସଙ୍ଗଠନ କରିବାକୁ ଯାଇ, ହୁଏ ତ ଅନନ୍ତ ବାବୁଙ୍କର କ୍ଲାସ୍ ପ୍ରମୋସନ ହୋଇଯାଇଛି ।

ଅନନ୍ତ—ଅସମ୍ଭବ, ଏ ସବୁର ଭକ୍ତ ହେବାଭଳି ଗୌରବ—

ବିଜୟା—ଅପଣଙ୍କର ନାହିଁ, ତା ମୁଁ ଜାଣେ । ହଁ, ପଥଶ୍ରାନ୍ତ ହୋଇ ଆସିଛନ୍ତି, ଅନ୍ତତଃ ଚା କପେ ? ରମା ବିଷୟରେ କଥା-ବାର୍ତ୍ତା ହେଉ ହେଉ ମୁଁ ଏକାଦେଲେ ଭଦ୍ରତା ବି ଭୁଲି ଯାଇଥିଲି ଯେ—କ୍ଷମା ଦେବେ । (ଚାଲି ଯାଉଥିଲା)

ଅନନ୍ତ—ବିଜୟା, ମିଛରେ ମୋ ଲାଗି କଷ୍ଟ କରିବା ଦରକାର କଅଣ ? ମୁଁ ତ ଚା ପା ଖାଏ ନାହିଁ, ତୁମେ ଜାଣ ।

ବିଜୟା—ଅଚ୍ଛା, ମୁଁ ଅଟେଁ ଟିକିଏ, ବସନ୍ତୁ ନା (ଚାଲିଗଲା)—

(ଅଳ୍ପକାଳ ପରେ ଦୁଇ ହାତରେ ଦୁଇଟି ଗ୍ଲାସ ଧରି ଅସି ଅନନ୍ତକୁ ଆଗ ) ନିଅନ୍ତୁ, ଏଥର ବୋଧହୁଏ, ଆପଣଙ୍କର ଆପତ୍ତି କରିବାର କିଛି କାରଣ ନାହିଁ ( ଗୋଟାଏ ଗ୍ଲାସ ବଢ଼ାଇ ଦେଲେ )

ଅନନ୍ତ—ଓଃ, ସରବତ ! (ପିଇଲେ)

ବିଜୟା—(ନିଜେ ପିଇ) ବାଧା ହେଲ, ଆପଣଙ୍କର ସେ ଉତ୍କଟ ଲେକ୍‌ଚରର ତାକୁ ଶୁଣି ଆଉ କି ଚା ଖାଇହୁଏ ? ମୁଁ ବି ସେଇ ପନ୍ଥା ଧରିଲିଣି ।

ଅନନ୍ତ—ତୁମେ ! ! (ଅଶ୍ଚର୍ଯ୍ୟ ହୋଇ ଚାହିଁଲେ)

ବିଜୟା—ଦେଖନାହାନ୍ତି, ମୁଁ ବି ଆଉ ଆଜି କାଲି ଚା ଖାଉ ନାହିଁ ଯେ !

ଅନନ୍ତ—ଚା ଖାଉ ନାହଁ ! ରମା—ଗୋଟେ ମଫସଲି ଝିଅ, ମାନେ ତମ କଥାରେ ଯାହାକୁ ତମେ କୁହ rustic creature ( ରଷ୍ଟିକ୍ କ୍ରିଚର୍ ) ତା ଉପରେ ଫେର୍ ତମର ସ୍ନେହ, ମାୟା—ଅଶ୍ଚର୍ଯ୍ୟ ହୋଇ ଯାଉଚି ମୁଁ ।

ବିଜୟା—ମାନେ ? ଏସବୁ ଦେଖି, ନା ? (ହସି ଅନନ୍ତ ହାତରୁ ଗ୍ଲାସ ନେଇଗଲା )

ଅନନ୍ତ—ଆହା, ଥାଉ, ଥାଉ; ମୁଁ—

ବିଜୟା—କିଛି ପାପ ଲେଖିବ ନାହିଁ ସେଥିରେ । (ଚାଲିଗଲା, ଗ୍ଲାସ ରଖିଆସିଲା )

ଅନନ୍ତ—ବାସ୍ତବିକ ବିଜୟା, ତମର ଏ ପରିବର୍ତ୍ତନ ଦେଖି—

ବିଜୟା—ଅଗଣ୍ଡ୍ୟା—(ବସିଲା ଚୌକି ଉପରେ)
ଅନନ୍ତ—ଅଗଣ୍ଡ୍ୟା-ମାନେ ?
ବିଜୟା—ହଁ; ମଣିଷ ତ ଫେର୍ ? ମନ ଅଛି, ଧାନ ଅଛି ତାର । ଏ କହୁଲ ପରା ଅପଣଙ୍କର ଲେକ୍‌ଚର ଶୁଣି ଶୁଣି—ଘୁଞ୍ଚନ୍ତୁ, ଏଇନେ ଉମାଲାଗି କଅଣ କରିଯିବ କହନ୍ତୁ ତ ?
ଅନନ୍ତ—କିଛି ତ କେହି କହୁପାରୁ ନାହାନ୍ତି ।
ବିଜୟା—ଦାମା ତ କିଛି ବଦମାସି କରି ନାଇଁ ଅଉ ?
ଅନନ୍ତ—କିଏ ଜାଣେ ? କିନ୍ତୁ ଆତ୍ମହତ୍ୟା ସେ କରି ନାହିଁ ।
ବିଜୟା—ହେଇପାରେ, ବାଇ ପଳେଇବାର ତ କୌଣସି କାରଣ ନାହିଁ ।
ଅନନ୍ତ—ହୁଏ ତ ଭୟ । ଦେଖେଁ, ଅଉ ଠିକିଏ ଖବର ନିଏଁ (ଉଠି) ମୁଁ କିଛି ଖାମ ଖାଇ ନାହିଁ; ଖାମ ଦାମ ଖାଇ ଦେଖିବି, ଅଉ ଥରେ ତାର ଖବର ନେବି, ତା ପରେ—
ବିଜୟା—ଖାମଦାମ, ମାନେ ? ଗାଟ୍‌ଚା ପାଟ୍‌ଅା—ଏଇ ତ ? ଏଇଟି ଖାଇଲେ କି ଚଳିବ ନାହିଁ ?
ଅନନ୍ତ—ନାଇଁ, ମୁଁ ଯାଏଁ । (ଉଠିଲେ)
ବିଜୟା—ହଁ ହଁ, ସତେ ଅମର ତ ଶେଦଡ଼ ନାହିଁ, ବଦଳିବା ପାଇଁ ।
ଅନନ୍ତ—(ହସି) ତା ନୁହେଁ, ତେବେ—ଯାଏଁ, ଆସିବି ଯେ ।
ବିଜୟା—ତାହେଲେ ଅମର ଏଇଟି ଖାଇବେ ?
ଅନନ୍ତ—ହଁ, ସେଇଆ ହେଲା । (ହସି ଚୁଲିଗଲା)
ବିଜୟା—(ଅନନ୍ତ ଯିବା ବାଟକୁ ଚାହିଁ, ଟେବୁଲରେ ହାତ ରଖି ଦୀର୍ଘନିଃଶ୍ୱାସ ମାରିଲା )
ଲକ୍ଷ୍ମୀ—(ଆସି) ବିଜି ! (ବିଜୟା ଚମକି ଉଠିଲା)

ବିଜୟା—କଅଣ ଭାଇ ?

ଜୟୀ—ମୋ ସିଗାରେଟ୍ କେସ୍‌ଟା ଏଠି—

ବିଜୟା—(ଦେଖାଇ) ହିଁ, ମୁଁ ସେଇଆ ଭାବୁଛି, ଏଠିକି ଆଣିଲା କିଏ ?

ଜୟୀ—(ବସି ଖଣ୍ଡେ ସିଗାରେଟ୍ ଲଗାଇ) କିଏ ଆଣିଥିବ !

ବିଜୟା—ତୁମେ ଜାଣ ନାଁ ? କିଏ ଆଣିଥିଲା ମୋ ଘରକୁ ?

ଜୟୀ—(ହସି) ତୁ ଯେ, ନ ଆଣିଥିବୁ ଏହାର ପ୍ରମାଣ କଅଣ ?

ବିଜୟା—ମୁଁ ? ମୋର ସିଗାରେଟ୍ କେସ୍‌ଟା କଅଣ ହଉଥିଲା ? ଖାଏଁ ନା ଧାରେଁ ? କେବେ ଦେଖିଛ ?

ଜୟୀ—ସବୁ କଥା କଅଣ ଲୋକେ ଖାଲି ଦେଖିଥାଆନ୍ତି ? ଏଇ କେସ୍‌ଟା—ତୋ ଘରେ ଥୁଆ ହୋଇଚି,—କେମିତି ଆସିଲା, ତୁ କଅଣ ଦେଖିଲୁ ?

ବିଜୟା—(ଭେଲେଇ) ନାଇଁ ଭାଇ, ସତେ କିଏ ଆଣିଲା ?

ଜୟୀ—ମୁଁ କେମିତି କହିବି ? ହୁଏ ତ ଯାହାର—

(ଜମିଦାର ଶୀଘ୍ର ଆସିଲେ—ହାତରେ ଖଣ୍ଡେ ଚିଠି)

(ବିଜୟା ସିଗାରେଟ କେସ୍‌ଟା ଲୁଚାଇବ ଛୁଡ଼ା ହେଲା)

ଜମିଦାର—ଅନନ୍ତ ଆସିଥିଲେ ପରା ? କାଇଁ ? ଭାବ ତ ସେଦିନ ସୁପାରିସ୍ କରିପକାଉଥିଲେ ପ୍ରଜାଙ୍କ ପାଇଁ—ସାହାଯ୍ୟ ଦିଅ, ସ୍କୁଲ ଦିଅ, ଅନ୍ନଛତ୍ର ଖୋଲ, ତାଙ୍କୁ କାମ ଦିଅ—ଭାରି ଲମ୍ବା ଲମ୍ବା କଥା କହୁଥିଲେ ପ୍ରଜାଙ୍କର ହୋଇ । ଆସି ଦେଖ ତ ଏ ଚିଠି । ବାବା ! ସେମାନଙ୍କର କେବେ ଭଲ ହବ ଆସେ ? ନ ଜାଣି କହ କଅଣ ଜମିଦାରମାନେ—

ବିଜୟା—କଅଣ ବାପା ?

ଜମିଦାର—(ଗଡି ବଢ଼ାଇ) ପଢ଼, ଗଡି ଚଢ଼; ଅନନ୍ତ ବାବୁଙ୍କ ଗ୍ରାମ୍ୟ-ସଙ୍ଗଠନର ଫଳ ! ମୂର୍ଖ ପ୍ରଜା, ତାଙ୍କୁ ହାତ ବାମୁଡ଼ା ଶିଖାଇବ ?

ଜମ୍ବୁ—(ଗଡି ଚଢ଼ିଲେ ବଜଯ୍ୟାଟୁ ନେଇ, ବଜଯ୍ୟା ଦେଖୁଥାଏ)

ଜମିଦାର—ପଢ଼ିଲ ? ଦେଖିଲ ? ମାଗଣ ଏମାନେ ଅଙ୍କ ଦେଲେ ନାହିଁ । ଏମିତ ଦେଇ ଅସୁଥିଲେ । ହଁ, ମାନୁଛି, ଅଙ୍କ ସମସ୍ତ ଷିଦେ ଖରାପ । ତା ବୋଲି ସମସ୍ତେ ତ ସମାନ ନାହାନ୍ତି ; ଛୁଏ ତ କମ୍ ଦେଶି ପାଇଁ ମୋ ପାଖେ ଓଜର ଆପତ୍ତି କରି ପାରନ୍ତି । କିନ୍ତୁ ଗୋଟା ସାରା ଗାଁ ଜଦ୍ ଧରି···ଅଚ୍ଛା—

ବଜଯ୍ୟା—ଅନନ୍ତ ବାବୁ ଅସନ୍ତୁ, ତାଙ୍କୁ କହିଲେ ଅନ୍ତତଃ ସେ ଥରେ ଯାଇ ପ୍ରଜାମାନଙ୍କୁ ବୁଝାଇ ଦେବେ କଥାଟା ।

ଜମିଦାର—ବୀର ବିକ୍ରମ ବଂଶ ସାତପୁରୁଷି ଜମିଦାର, ପ୍ରଜାଶାସନ ତାର ଜନ୍ମଗତ ଅଧିକାର—ସେମାନେ କିମିତ ବୁଝିବେ—ସେ କଥା ମୋତେ ଶିଖିବାକୁ ହେବ ନାହିଁ କାହାଠାରୁ । ମୁଁ ନିଜେ ଯିବ । ଶାସନ ମୋରେ ଦଣ୍ଡା, ଅଉ, ଏଇ ତାଙ୍କୁ ବୁଝାଇ ଦେବ ଯେ, ମୁଁ ଜମିଦାର । (ବନ୍ଧୁକ ଉଠାଇଲେ)

ବଜଯ୍ୟା—(ଚମକି) ବାପା !

ଜମିଦାର—ନାଇଁ ବଜଯ୍ୟା, ଶାସନ ନେଇ ତୁ କିଛି କହ ନା । ମୁଁ ବାହାରୁଛି ଇଲାକା ଭିତରକୁ, ସବୁ ପ୍ରସ୍ତୁତ ।

(ଚାଲିଗଲେ)

ଜମ୍ବୁ—ବାପାଙ୍କର ଯେ ଜିଦ ତୁ ଜାଣୁ, ଛୁଏ ତ ଗୁଡ଼ାଏ ନିରୀହ ପ୍ରଜା—

ବିଜୟା—କଅଣ ଯେ ଗୋଳମାଳ ହେଇ ଉଠିବ, କିଏ ଜାଣେ ? ବାପା ଯେମିତି ଏଗୀ—ମୋତେ ତ ତାଙ୍କ ଉଲ ଦିଶୁ-ନାହିଁ ।

ଜୟୀ—ଅନନ୍ତା ଭଲ ଏତେବେଳେ—

ବିଜୟା—ସେ ତ ଆସିଥିଲେ, ଚାଲିଗଲେ ଏଇଟନ । ଫେର୍ ଖବର ଦେଲେ ସିନା ଯାଇ—

ଜୟୀ—( ଦୂରକୁ ଚାହିଁ ) ହେଇଟି ବାପାଙ୍କର ସୁଅସ୍ତ ବାହାରିଲାଣି ; ଅନନ୍ତକୁ ଅଜ ଖବର ଦେବାକୁ ବେଳ ନାହିଁ, ମୁଁ ଦେଖେଁ—
( ହଠାତ୍ ଚାଲିଗଲା )

---

## ଚତୁର୍ଥ ଦୃଶ୍ୟ

ସହରେ ଖଟି—ସେବା-ସଦନ

( କେତେଜଣ ପୁରୁଷ ଓ ମହିଳାକର୍ମୀ ସୁଭାଷଙ୍କ ଇତ୍ୟାଦି କାମରେ ଲଗିଥିଲେ; ସ୍ୱାମୀଜ ଗୀତ ଗାଉଥିଲେ )

ଗୀତ

ଚାଲରେ, ଆଗେ ବଢ଼ିଚାଲ,
ଘାତ କର ପଥର ତୁ ନ ହୁଅ ବେହାଲ୍ !
ମୂଣ୍ଡ ଫାଳ ଭୁଟ୍ରେ ମାର
ଖାଟୁ ତୁ ମୂଲିଆ
ଅରଜନ ଖାଏ ହୋର
ଶେଠ ଗଉନ୍ତିଆ,
ତୋର ନାହିଁ କଳା, ପିଛେ—
ସୋ ସାଲ୍ ଦୋସାଲ୍ !

ସବରେ ସହୁବେ ନାହିଁ ଦେବ ଭଗବାନ,
ଗୃହୀ ମୂଲ୍ୟର ତାଙ୍କେ ଧରନ୍ତି ଆସନ,
ଅସିନ୍ତି ରେ। ଦାନ ପେଶ୍‌, ଜଳୁଛି ମଶାଲ୍—
ଅଗେ ବଢ଼ିଚାଲ୍ ।

( ଓଦା ହାତ ପୋଛୁ ପୋଛୁ ଅସିଲ ରମା । ହାତ ପୋଛୁସାର ସ୍ୱାମୀଜୀଙ୍କୁ ପ୍ରଣାମ କଲା । ସ୍ୱାମୀଜୀ ଚୀତ ବନ୍ଦ କର ପଚ୍ଚାରଲେ ତାକୁ)

ସ୍ୱାମୀ—ମାଅ, ଏତେ ଡେରିରେ ତୋର ଅଜ ?

ରମା—ସେବାସଦନଟିଏ ତ ଖୋଲ୍‌ଦେଲେ ବାବା, ଦେଖେ କଏ ?
ଅଜ ଯେଉଁ ପିଲାଟି ଅସିଛି, ଅହାର ବିନା ତାର ଜୀବନ ନାହିଁ । ଏଣା ଥରେ ତ ଖୁଆଇ ଦେଲେ ଚଳିବ ନାହିଁ । ତାରି ସେବାରେ ଲଗିଥିଲି । ବୁନାକୁ ରଖାଇ ଦେଇ, ଅଲଣକୁ ଅସିଲି ।

ସ୍ୱାମୀଜୀ—ବେଶ୍, ବେଶ୍ କରୁଛୁ ରମା ! ମଙ୍ଗଳପଥର ବଢ଼ୁଛୁ ତୁ !
ତୋର ପୂର୍ବ ଏତେ ବୁଦ୍ଧି ହେବ ବୋଲ୍ କଏ ଜାଣି-ଥିଲା ? ଅଜ ବୁଝୁଛି ମାଅ, ଭଗବାନ ତୋତେ ଘରୁ ବାହିରଅଣି, ସେ ଧନ ବଣ ଭିତରେ ପକାଇ ଥିଲେ କାହିଁକି ? ମୋର ବା ହଠାତ୍ ତୋ ସାଙ୍ଗେ ଦେଖାହେଲା କାହିଁକି ? ସେତେବେଳକୁ ସେବାସଦନ ଖୋଲାହୋଇ ନ ଥାଏ— ।

ଜଣେ—ସେବା ସଦନ ଖୋଲା ହେବାର ତ ଏଇ ଧନ ହେଲଟା ହବ କି ନାହିଁ, ନୁହେଁ ?

ଅଉ ଜଣେ—ହଁ, ଅନନ୍ତ ବାବୁ ପିଲାର ହେଇଦନ ପରେ ତ ଅରମ୍ଭ ।

ରମା—ଅନନ୍ତ ବାବୁ ? ( ଅଶ୍ଚର୍ଯ୍ୟ ହୋଇ ଚାହିଁ ରହିଲ )

ସ୍ୱାମୀଜୀ—ସେ ଜଣେ ଦେଶସେବୀ ମାତ୍ର ! ଘରଦ୍ୱାର, ଖାଇବା, ପିଇବା, ସବୁଭୁଲି, ସେ ବସିଛନ୍ତି ଲାଗିଛନ୍ତି ଦେଶ ସେବାରେ । ଲୋକଟି ଟିକିଏ ରୁକ୍ଷ, ଏକୁଟିଆ, ମାତ୍ର ଅକ୍ଲାନ୍ତ ପରିଶ୍ରମୀ ।

ରମା—ସେ କୋଉଠି ଅଛନ୍ତି ?

ସ୍ୱାମୀଜୀ—ଯାଇଛନ୍ତି ତାଙ୍କ ଗାଁକୁ, ଆସିବେ ସେ । ତୁ ଆସିବାର ଅଳ୍ପ କେଇଦିନ ଆଗରୁ ତ ସେ ଏଠୁ ଚାଲିଗଲେ ।

ରମା—ସେ କେଅଟ୍ଟା ଆସିବେ ଏଠିକି ଫେର୍ ?

ସ୍ୱାମୀଜୀ—ଅନେକଦିନ୍ ତ ଆସିବାର କଥା ମାତ୍ର—ଦେହପାତ୍ର କରୁ ହେଲା କି କଅଣ ।

ଝୁନା—(ଭିତରୁ ଆସି) ରମା ଅପା, ପିଲାଟି ଭାରି କାନ୍ଦୁଚି, ଆମେ ସବୁ ପାରୁନୁ, ତୁମେ ଟିକିଏ ଆସ ।

ରମା—ଶୋଇଥିଲା, ଉଠିପଡ଼ିଲା ଏତେବେଗେ ? ତମେ ସବୁ ଗୋଳମାଳ କରିଥିବ କି କଅଣ ? ଚାଲ୍, ଚାଲ୍ ।

(ଚାଲିଗଲା)

ସ୍ୱାମୀଜୀ—(ହସି) ଅସ, ଦେଖିଯିବ ଅସ, ସେବାସଦନ ଭିତରେ ଦେଖିଲେ ଜାଣିବ ରମା କଅଣ ।

ଝୁନେଁ—ଚାଲନ୍ତୁ ।

( ସମସ୍ତେ ଗଲେ )

---

## ପଞ୍ଚମ ଦୃଶ୍ୟ

ସ୍ଥାନ—( ବିଜୟା ଓ ଗୁମାସ୍ତା )

ବିଜୟା—ସ୍ତାଙ୍ଗରେ ଅନ୍ତ କିଏ ଗଲା ?

ଗୁମାସ୍ତା—ଲୋକ ପତ୍ରୁଣ ଦେଇକ ଯାଇଛନ୍ତି । କ୍ରୋଧ ଗୁଡ଼ର ସବୁ ତ—

ବିଜୟା—ବୁଝିଲି, ଅନନ୍ତବାବୁଙ୍କୁ ଡାକେଇଲ ?

ଗୁମାସ୍ତା—ଦଶଟା ଲୋକ ଗଲେଣି ତା ପଛେ, ତା ପଛେ ।

ବିଜୟା—କିଛୁ ଖବର ନାହିଁ ?

ଗୁମାସ୍ତା—ନାଁ ।

ବିଜୟା—ଘରେ କଅଣ ନାହାନ୍ତି ସେ ?

ଗୁମାସ୍ତା—କେଜାଣି, ଥିବେ କି ନଥିବେ ସେ । ନଇଲେ ଯିବାକି ? ତାଙ୍କୁ ଯାଇ—

ବିଜୟା—ହଁ, ହଁ, ଯା, ବେଗେ ଡାକିଅଣ । ଭାଇ ଗଲେ କୁଆଡେ ?

( ଅନନ୍ତ ଅସିଲେ )

ବିଜୟା—ଓଃ, ଏତେ ଡେରି କଲେ । ଭାଇ କାହାନ୍ତି ?

ଅନନ୍ତ—ଜାଇଁ, ମୁଁ ଜାଣି ନାଇଁ ତ ।

ବିଜୟା—ଜାଣି ନାଇଁ ତ ! ଆପଣଙ୍କ ପାଖକୁ ଯାଇ ନାହାନ୍ତି ସେ ?

ଅନନ୍ତ—ନାଇଁ ତ ।

ବିଜୟା—ବସନ୍ତୁ । ବସନ୍ତୁ, ଅନେ ବାବୁ, ଭାଇଙ୍କି ଦେଖିଲ, ଯା

(ଗୁମାସ୍ତା ଗୁଲଗଲା)

ଅନନ୍ତ—କଅଣ, କଥା କଅଣ ? ବଡ଼ ବ୍ୟସ୍ତ ହେଲପରି—

ବିଜୟା—ବସନ୍ତୁ, କହୁଛି । ଆପଣ ଯିବା ପଛେ ପଛେ ବାପା ଗୋଟେ ଚିଠି ଅଣି ଅସିଲେ ଯେ ପ୍ରଭାଏ କୋଉଁଠି ଟେଲି

ବାଛ, ତହସିଲଦାର ସଙ୍ଗେ ଝଗଡ଼ା କରି ବସିଛନ୍ତି—
ଖଜଣା, ମାଗଣା, ଦେବାକୁ ନାରାଜ ।

ଅନନ୍ତ—କେଉଁଠି ?

ବଜୟ୍ନା—ତା ମୁଁ ଜାଣିନାହୁଁ ଠିକ୍‌କରି । ବଡିନ ଗୁମାସ୍ତା ଜାଣିଥିବେ ନିଶ୍ଚୟ । ବାପା ତ ଯେମିତି ଲୋକ, ଜାଣନ୍ତି । ସେ ସାଙ୍ଗେ ସାଙ୍ଗେ—ଏକଦମ୍ ଅଖିଆ ଅପିଆ ବାହାରି ଗଲେ । ଗୁଡ଼ାଏ ଲୋକ ଯାଇଛନ୍ତି ସାଙ୍ଗରେ । ହୁଏତ ଗୋଟେ କିଛି ଗୋଳମାଳ—

ଅନନ୍ତ—ଅସମ୍ଭବ ନୁହେଁ । ବାପା ନିଜେ ଯିବା କି ଦର୍କାର ଥିଲା ? ଆମେମାନେ ତ ଅଛୁଁ, କମ୍ଭୀ କାହିଁ ?

ବଜୟ୍ନା—ବାପାଙ୍କ ଯିବା ପଛେ ପଛେ, ସେ ତରତର ହୋଇ ବାହାରି ଗଲେ । ମୁଁ ତ ମନେ କଲି, ହୁଏ ତ ଆପଣଙ୍କୁ ଖବର ଦେବାକୁ—

ଅନନ୍ତ—କାଇଁ ନାଇଁତ, ରାସ୍ତାରେ ବି ଦେଖିନାହିଁ । ଖବରଟା ଠିକ୍ ବୁଝାଗଲା ନାଇଁ ଯେ, କେଉଁଠି କଜିଆ ହେଉଚି ।

ବଜୟ୍ନା—ଗୁମାସ୍ତା ସେ କଥା କହି ପାରିବେ, ଡାକୁଚି ମୁଁ । (ଉଠି) ବାଲିଆ, ବାଲିଆ ।

ବାଲିଆ—ଆଜ୍ଞା (କହି ଆସିଲା)

ବଜୟ୍ନା—ଗୁମାସ୍ତାଙ୍କୁ ଡାକି ଦେ ତ ବେଗେ ।

ବାଲିଆ—ଆଜ୍ଞା ! (ଗୁଚିଗଲା)

ଅନନ୍ତ—ବିଜୟ୍ନା, ମଫସଲରେ ପ୍ରଜାଙ୍କ ଅବସ୍ଥା ଯାହା, ବିଦ୍ରୋହ ହେଉଥିବା ଅସମ୍ଭବ ନୁହେଁ । ହୁଏ ତ ତହସିଲଦାର ଟିକିଏ

ଜୁଲମ କରିଥିବେ । ପେଟେର ପୋଡ଼ ରହିଛି । ବାପାଙ୍କର ନିଜେ ପିବାଟା ଭଲ ହେଲା ନାହିଁ ।

ଗୁମାସ୍ତା—(ଆସି) ସାନବାବୁ ସାଇକେଲ ନେଇ କୁଆଡ଼େ ବାହାରି ଯାଇଛନ୍ତି ।

ଅନନ୍ତ—ଗୋଲମାଲ କେଉଁ ଗାଁରେ ହେଉଛି ?

ଗୁମାସ୍ତା—ସରପୋଖରୀ ମୌଜା ।

ଅନନ୍ତ—ସରପୋଖରୀ ! (ଥକାମାରି ଗୁହୁଁ ରହିଲେ)

ବିଜୟା—କୋଉଠି ସେ ଗାଁଟା ? ଆପଣ ଜାଣିଛନ୍ତି ସେଠା ଲୋକେ କିମିତି ?

ଅନନ୍ତ—ଜାଣେ । ଷ୍ଟିଫେନ୍ ବାବୁ, ସେଠି କଣ ଆସିଥିଲା, ଜାଣନ୍ତି ଆପଣ ?

ଗୁମାସ୍ତା—ନାଁ, ସେଠିପାଇଁ ତ ବଡ଼ବାବୁ ଯୋଗି, ସାଙ୍ଗେ ସାଙ୍ଗେ ସୁଅସ୍ତ୍ର ବେହେର ଦଳବଳ କରି, ବାହାରିଲେ । ମୋ ଶୁଣିବାରେ ଅନନ୍ତବାବୁ, ସେଠା ତହସିଲଦାରଙ୍କୁ—

ଅନନ୍ତ—ଅଚ୍ଛା, ଅଚ୍ଛା, ଆପଣ ଯାଆନ୍ତୁ । ସାନବାବୁ କିଛି କହି ଯାଇ ନାହାନ୍ତି—କୁଆଡ଼େ ଗଲେ ?

ଗୁମାସ୍ତା—ହଁ, ସେ ତ ସାଇକେଲ ଧରି ବାହାରିଗଲେ ବୋଲି ଚିଅଦା କହୁଛି, ବଡ଼ବାବୁଙ୍କ ପିବା ପଛେ ପଛେ । ମତେ ଆଉ ତାଙ୍କୁ ଦେଖିବାକୁ ତର ନାହିଁ । ମୁଁ ତ ସରପୋଖରୀ ଯିବାକୁ ବଡ଼ବାବୁ କହିଗଲେ ।

ଅନନ୍ତ—ହଉ ହଉ, ଆପଣ ଯାଆନ୍ତୁ ।

ଗୁମାସ୍ତା—(ଚାଲିଗଲେ)

ଅନନ୍ତ—ବିଜୟା, ମୋତେ ବାହାରି ଯିବାକୁ ହବ ।

ବିଜୟ୍ନା—ଆପଣ···କୋଉଠିକି ?

ଅନନ୍ତ—ସବୁ ଦେଖାଇବି । ସେଇ ଗାଁଅରେ ମୁଁ କାମ ଆରମ୍ଭ କରିଥିଲି ।

ବିଜୟ୍ନା—ସେଇ ଗାଁ ! ସେଇଠି ଏ ଗୋଲମାଳ ! ସେଠି ଲୋକ ଏଇଆ ଶିଖିଲେ !

ଅନନ୍ତ—ମୁଁ କିଛି କହି ପାରୁନାହିଁ । ଶୁଣିଥିଲି ପ୍ରଜାଏ ଟିକସ ଛାଡ଼ି ଉଠିଥିଲେ, ତହସିଲଦାରଙ୍କ ମାଡଣ କାରବାରରେ ।

ବିଜୟ୍ନା—(ଭାବି) ତା ହେଲେ ତ, ସେଇଟି ବୋଧହୁଏ—କେତେ ବାଟ ସେ ଗାଁଟା ଏଠିକି ?

ଅନନ୍ତ—ବାଟ ବେଶି ନୁହେଁ, ସାତ ଆଠ ମାଇଲ ହେବ ।

ବିଜୟ୍ନା—ତାହାହେଲେ, ବାପା ହୁଏ ତ ପହଞ୍ଚିସିବେଣି, ଏତେବେଳେ ଯାଇ ଲଭ ବା କଅଣ ? ଯାହା ହବାର—

ଅନନ୍ତ—ଦେଖାଯାଉ, (ଉଠି) ମୁଁ ଚାଲିଲି ।

ବିଜୟ୍ନା—ମୁଁ ଗଲେ—

ଅନନ୍ତ—ତୁମେ ! (ଆଶ୍ଚର୍ଯ୍ୟ ହୋଇ) ତୁମେ କେମିତି ଯିବ ? ଆଉ ସେ ସବୁ ଯାଗାକୁ ତୁମେ ଯିବାଟା—

ବିଜୟ୍ନା—ଅସୁନ୍ଦର—ନାଁ ?

ଅନନ୍ତ—ନାଁ, ତୁମ ଯିବାର ଦର୍କାର ତ କିଛି ନାହିଁ—। ଏ ଗୋଲମାଳ ଭିତରକୁ ।

ବିଜୟ୍ନା — ଆପଣ ଯାଉଛନ୍ତି ଯେ—

ଅନନ୍ତ—( ଅଳ୍ପ ହସି ) ମୋ କଥା—ଆଉ ତୁମ କଥା !

ବିଜୟ୍ନା—ତା ମାନେ ?

ଅନନ୍ତ—ମୁଁ ବାରବୁଲ ପଦ୍ମର—ଅଜ ବିଜୟା,—ତୁମେ ଜମିଦାର କନ୍ୟା ।

ବିଜୟା—(ହଠାତ୍ ଗମ୍ଭୀର ହୋଇ ଟେବୁଲ ପାଖେ ଠିଆହେଲ—ଟେବୁଲରେ ଦୁଇ ହାତ ରଖି । ଏତକବେଳେ ଗଣ୍ଡିଏ ଚିଠି ଗୁଡ଼ର ବାଲିଆ ଆଣି ଦେଇଚ ଅନନ୍ତକୁ)

ବାଲିଆ—(ଅନନ୍ତକୁ) ଚିଠି । (ଗୁଲିଗଲ)

ଅନନ୍ତ—(ଚିଠି ପଢ଼ିବାରେ ଲାଗିଲ—ବିଜୟାକୁ ଲକ୍ଷ୍ୟ ନାହିଁ । ବିଜୟା ସେମିତ ଛିଡ଼ା ହେଇଚ ।) ଅରେ, ମୋତେ ଟିକିଏ ଡାକିଲ ବି ନାହିଁ । (ବିଜୟାକୁ) ଦେଖିଲଣି ଇଯ୍ଯୀର ଚିଠି । (ଚିଠି ଦେଖାଇ ଗୁହିଁ ଦେଖେ ବିଜୟା କାନ୍ଦୁଚ । ଡାକିଚ) ବିଜୟା !

ବିଜୟା—(ମୁହଁ ଟେକି ଦେଲ—ଦୁଟୋପା ଲୁହ ତା ଆଖିରେ ଛଳ ଛଳ)

ଅନନ୍ତ—( ବିଜୟାର ହାତଧରି) ବିଜୁ ! (ସମସ୍ତେ ନୀରବ)

ଯବନିକା ।

---

# ପଞ୍ଚମ ଅଙ୍କ

## ପ୍ରଥମ ଦୃଶ୍ୟ

( ସର ପୋଖରୀ—ସେବାସଦନ । ଦୁଆର ଖୋଲା । ଗୋଟାଏ ପାଖେ, ଅରଟ ଧରି ଜଣ ବେଢେ ସ୍ତ୍ରୀଲୋକ କାମରେ ଲାଗିଛନ୍ତି, ଗୀତ ଗାଉଚନ୍ତି । ଏତିକିବେଳେ ସେଠିକି ଆସିଲେ ଜମିଦାର—ସାଙ୍ଗରେ ପିଆଦା ଓ ଆଉ ବେଢେଜଣ ଲାଠିଆଲ )

ଗୀତ

ଗିରିବନ-ମନୋହର, ଶ୍ୟାମ-କଳେବର
ସୁନ୍ଦର ମୁଖ;—ସୁଖ-ଦାୟୀ ।
ବଙ୍ଗ-ମହୋଦଧି ଚରଣ ପଖାଳେ
ଗୃହୁ ଲକ୍ଷ୍ମୀ;—କୁଳଶାୟୀ ।
କୋଟି ପତିତ ଜନ ଧନ୍ୟ ହୁଏ, ଯହିଁ
ପତିତପାବନ ଗୃହିଁ,
ଗଙ୍ଗାଧର-ହର, ଅର୍କ ଭୂମି ଏ ମୋ
ଜନମୀ ଅଞ୍ଚଳ ଛାଇ ।
ଧନ ଧାନ୍ୟ ମଣି ରତନ ଖଣି, କବି-
କାବ୍ୟ କଳା ଘରେ ଥାଇ,
ଏହି ସୁତା ସୁନା ନ ଚିହ୍ନିଲେ ଯଦି
ଦେଶ ଭାଗ୍ୟ ଆଉ କାହିଁ ?

ଜମିଦାର—ଓ, ସେବା-ସଦନ !

( ସ୍ତ୍ରୀଲୋକମାନେ ଗୁଳିଗଲେ ଭିତରକୁ । ରମାକୁ ଠାରି ଦେଲେ ସେ ମଧ୍ୟ ଗୁଳିଗଲା )

ପିଅଦା—ହଜୁର ।

ଜମିଦାର—ଏମାନେ ?

ପିଅଦା—ଘର ନାହିଁ ଦୁଆର ନାହିଁ, ପଡ଼ିଛି ଛତରଖାଇ ମାଇକିନିଅ ।

ଜମିଦାର—ଚୁପ୍ କର, ଏ ସେବା-ସଦନ ତିଆର କରିଛି କିଏ ?

ପିଅଦା—ହଜୁର, ଗାଆଁ ବାଲା । ତାଙ୍କ ହାତରେ କଉଣି ଟଙ୍କା ନାହିଁ ? ଆମକୁ ଦେବେ ନାହିଁ । ଗୋଟେ ପେଣ୍ଠ ବାନ୍ଧି, ପେଣ୍ଠିଧର ବସିଛନ୍ତି । କଅଣ ନା—ମାଗଣା ଆମେ ଦେବୁ ନାହିଁ । କହେ ତୁମ ସାତ ପୁରୁଷ ଏମିତ ଦେଇ ଆସୁଥିଲେ—ନା—ତୁମେ ଆଜି ନୂଆ ?

ଜମିଦାର—ହୁଁ, ସମସ୍ତେ ମନା କଲେ ?

ପିଅଦା—ଗୋଟିକିଏଁ, ଗାଆଁ ଏ ମୁଣ୍ଡ ସେ ମୁଣ୍ଡଯାଏ ।

ଜମିଦାର—ଓ, Revolution ( ରିଭଲ୍ୟୁସନ୍ ) ତହସିଲଦାର କାହାନ୍ତି ?

ପିଅଦା—ହଜୁରଙ୍କ ସବାର ଲଗିବା ଆଗରୁ ତାଙ୍କୁ ଗାଆଁ ବାଲା ସବୁ କାହିଁକି ଡାକି ନେଇଛନ୍ତି ତ ।

ଜମିଦାର—ଅଚ୍ଛା, ଭାଙ୍ଗ ଏ ସେବା-ସଦନକୁ—ଏଠିକା ସବୁ ଜିନିଷ ବୁହାଇ ନିଅ କଚେରୀ ଘରକୁ ।

ପିଅଦା—ଗୋଟା ଗାଆଁ ଡାଉ ରହିଚନ୍ତି ଯେ—

ଜମିଦାର—ତୁପ୍‌କର, ନମକ୍ ହାରମ ! (ନିଜ ପକେଟରୁ ପିସ୍ତଲ ବାହାର କରି, ହାତରେ) ଭାଙ୍ଗ, ଦେଖେଁ ଗାଁଟା ଯାକ ବଞ୍ଚି ନ ପାରନ୍ତି ।

( ଗ୍ରାମବାସୀମାନେ ପ୍ରବେଶ )

୧ମ ଗ୍ରାମବାସୀ—(ଜମିଦାରର ଭାଙ୍ଗିବାକୁ ଯାଉଥିବା ଲୋକଙ୍କୁ ବାଧାଦେଇ) ନାଁ ।

ଜମିଦାର—କିଏସ ତୁମେ ତୁମେମାନେ ?

ଗ୍ରାମବାସୀ—ଏ ଘର ଭାଙ୍ଗି ପାରିବେ ନାହିଁ ଅପଣ ।

ଜମିଦାର—ତାହେଲେ ମୁଁ ବୁଝିବି, ତୁମେମାନେ ମାଗଣ ଦେବାକୁ ରାଜି ?

ଗ୍ରାମବାସୀ—ନାଁ, ମାଗଣ ଅମେମାନେ ଦବୁ ନାହିଁ ।

ଜମିଦାର—ଦବାକୁ ହବ—ଆଜି ନୂଆ ନୁହେଁ, ପୂର୍ବପୁରୁଷଙ୍କ ଉପର ଏ ମାଗଣ ଦେଇ ଅସିଛନ୍ତି ।

ଗ୍ରାମବାସୀ—ଠିକ୍, ତା ବୋଲି ସେଇଟା ଜମିଦାରଙ୍କର ଦାବୀ ନୁହେଁ ।

ଜମିଦାର—ଦାବୀ ବୋଲି ଯଦି କହନ୍ତି ସେ—

୧ମ ପ୍ରଜା—ଅପଣଙ୍କର ଖଜଣା, ଭୂକର, ଜଳକର, ପଥକର, ଦାବୀ ଅଛନ୍ତି ପାଉଥା ଦଉ, କିନ୍ତୁ ତେବେ—ଏ ତ ଦରକାର ପାଇଁ ସରକାର ସାହେବଙ୍କୁ ନେଲେ, ଜମିଦାର କହନ୍ତି ତନିଗୁଣା—

ଜମିଦାର—ବାସ୍, ବାସ୍, ସେଇଟାହିଁ ଜମିଦାରର ହକ୍, ଅଜି ସେ ହକ୍ ଦେଇ ଅସିଛ ତୁମେମାନେ—ଦବାକୁ ବାଧ୍ୟ, ନେଇତଦନ ତୁମେ କୋହ ପ୍ରଜା ।

୨ୟ ପ୍ରଜା—କିନ୍ତୁ—

ଜମିଦାର—ସେ କିନ୍ତୁ ପିନ୍ତୁ ମୁଁ କିଛି ଶୁଣିବି ନାହିଁ । ଏସବୁ କାମରେ ଖର୍ଚ୍ଚ ଲଗି ତ ଟଙ୍କା ମିଳୁଚି ? ଏ ତ ତୁମମାନଙ୍କ ଧନରେ ଗଢ଼ା, ଆଉ ଜମିଦାରର ଦାବୀ ବେଳକୁ—

୧ମ ଗ୍ରାମବାସୀ—ଆପଣ ଜାଣନ୍ତି ନାହିଁ ଆଜ୍ଞା, ଏଇ ଅନୁଷ୍ଠାନ ଶହ ଶହ ଭୋକୀ, ଶୋଷୀ, ରୋଗୀ, ବାପ ମାଆ ଛଡ଼ା ଜୀବନର—

ଜମିଦାର—ଓଃ ଖୁବ୍ ଦୟା ! ଜମିଦାରର ବି ଜୀବନ ଅଛି, ଜମିଦାରର ଖର୍ଚ୍ଚ ଅଛି—ସେ ସବୁ ଛାଡ଼, ମୁଁ କହୁଥିବାକୁ ଚାହେଁ, ମାଗଣା ଯାହଣା, ତୁମମାନଙ୍କୁ ଦବାକୁ ହେବ, ଯେମିତ ଆଗେ ଦେଇ ଆସିଚ, ଆଉ ସେଇଟା ଆମର ଦାବୀ । ଦାବୀ ଅଦାୟ କରିବାର ଯଥେଷ୍ଟ କ୍ଷମତା ମୋର ଅଛି । ତୁମେମାନେ ଗୋଟେ ମେଳବାନ୍ଧି ଜିଦ୍ଧରି ବସିଚ । ବେଶ୍, ଶେଷଥର ପାଇଁ ମୁଁ ତୁମଙ୍କୁ କହୁ ଦେଉଚି—ତୁମମାନଙ୍କ ଏ ଲଠିର ଧମକରେ ମୁଁ ଦବି ଯାଉନାହିଁ । ଶାସନ ମୋତେ ଜଣା ; ହୁଏତ ମୋର ଦାବୀ ତୁମକୁ ମାନିନେବାକୁ ହେବ, ନାହିଁତ ତୁମମାନଙ୍କୁ ଶାସନ ଶିଖାଇବାକୁ—

କୃଷକ ନେତା—ହଁ, ପ୍ରସ୍ତୁତ ଅଛନ୍ତି ଆପଣ, ତା ଆମେ ଜାଣୁ ଜମିଦାର ସାହେବ । ଆଉ ଆମେ ବି ଢେର୍ ଆଗରୁ ପ୍ରସ୍ତୁତ ଅଛୁଁ । ମାଆ ଭଉଣୀ ଯାହାର ଲୁଣ୍ଠିତା ଦରିଦ୍ର ଖଣ୍ଡିକରେ ଇଜ୍ଜତ ଘୋଡ଼ାଏ, ଯେଉଁଠି ଭୋକିଲା କାନ୍ଦଲା ଛୁଆଙ୍କ ହାଡ ଟେକି ଧରି, ମାଆ ତାର ପିଏ ପେଜ ତୋରାଣି, ମାନ,

ଅନ୍ତତଃ, ଇଜ୍ଜତ ଯେଉଁଠି ବଜାରରେ ମୁଠାଏ ମୁଠାଏ ଭାତ ଲାଗି,—ସେଠାର ଲୋକେ ପ୍ରସ୍ତୁତ ନ ଥାନ୍ତି ଆଉ କେଉଁଥି ପାଇଁ ? ଯାହାଠୁଁ ଅଧିକ, କି ଦଣ୍ଡର ଧମକ ତାଙ୍କୁ ଦେଖାଇବେ ଆପଣ ?

ଜମିଦାର—ତାହାହେଲେ ପ୍ରସ୍ତୁତ ତୁମେମାନେ ? ବେଶ୍, ତୁମର ଏ ସବୁ ବାଜେ କଥାର ମୂଲ୍ୟ ମୋ ପାଖେ କିଛି ନାହିଁ, ମୁଁ ଜାଣେ ଶାସନ—ଆଉ ଦାବୀ ।

କୃଷକ ନେତା—ଆଜ୍ଞା ଆମେମାନେ ବି ଜାଣୁ—ଆମେ ଲହୁ ଦେଇ ଖାଟୁ, ଆପଣଙ୍କର ମଜୁରି ମଜଲସ୍ ଅସୁସ ପାଇଁ । ଅଜ ଥିଲୁ ଆମେ, ଆଖି ଫିଟିଛି । ମାଆ ଭଉଣୀ, ଶିଶୁ ବାଳକ, ହଜାର ହଜାର ଅନାଥ, କାଙ୍ଗାଲ, ଆମର ଗୁରୁ ! ଅପରାଧୀ—ଅପରାଧ, ଆମର ଅପରାଧ ?—ଆମେ ତାଙ୍କର ସହଧର୍ମୀ । କାମୁଳୀ ଲତା ଗଛକୁ ଖାଏ, ଆମେ ଜାଣୁ । ଆମେ ପ୍ରସ୍ତୁତ—କିନ୍ତୁ ଆପଣଙ୍କର ଦାବୀ ମାନିଯିବାକୁ ପ୍ରସ୍ତୁତ ନୋହୁଁ ।

ଜମିଦାର—ତା ହେଲେ ତୁମେମାନେ ମାଗଣା ଦବ ନାହିଁ ?

ସମସ୍ତେ—ନାଁ ।

ଜମିଦାର—ଏଇ ତୁମର ଶେଷ କଥା ?

ସମସ୍ତେ—ହଁ ।

ଜମିଦାର—ମୁଁ ଜାଣିବାକୁ ଚାହେଁ, ତୁମମାନଙ୍କୁ ଏପରି ମତେଇଛି କିଏ । ତୁମ ପରି ଛୋଟ ଜୀବକୁ ଦଳିବା ମୋର କାମ ନୁହେଁ । ମୋର ତାକୁଇ ଦରକାର,—କିଏସେ ତୁମର ନେତା ?

ଏ ମେଳର ମୂଳରେ କିଏ ? ମୁଁ ଜାଣିବାକୁ ଚାହେଁ, ତୁମମାନଙ୍କର ନେତା କିଏ ?

କୃଷକ ନେତା—ନେତା ଆଉ କେହି ନୁହେଁ ଜମିଦାର ସାହେବ—ନେତା ଏଇ ହଜାର ହଜାର ନିରନ୍ନ ଧାନ ଦରିଦ୍ର, ଆଉ ନେତା ଏଇ ଭୋକିଲା ପେଟର ଜ୍ୱାଳା । (ପେଟ ଦେଖାଇଲା)

ଜମିଦାର—ହଁ, ବୁଝିଲି, ତା ହେଲେ ଶାସନ ଲଗି, ମୋତେ ବାଧ୍ୟ କରୁଛ ? ବେଶ୍, କିଏ ଅଛରେ ?

ପିଆଦା—ହଜୁର !

ଜମିଦାର—ଲଠିଆଳଙ୍କୁ କହ, ଏମାନେ ଯେ ଯେଉଁଠି ଅଛନ୍ତି, ଜବତ କର ଘର ଲୁଟ କର—ଘରେ ଘରେ ନିଆଁ ଲଗାଇଦିଅ । ଏମାନେ ବୁଝନ୍ତୁ—ଜମିଦାର ତାର ହକ୍ ଅଦାୟ କରି ଜାଣେ, ଶାସନ କରି ଜାଣେ, ସେ ଜମିଦାର—ଭିଖାରୀ ନୁହେଁ, ରଜା ।

କୃଷକନେତା—ଅସୀମ ଦୟା ଆପଣଙ୍କର, ଲୁଟିଅଳ ଦରକାର ନାହିଁ । ଆମେମାନେ ଗରିବ, କଙ୍ଗାଳ । ଏଇ କଙ୍ଗାଳ ଗୁଡ଼ିକର ଶେଷ ଖୁଦ ମୁଠିକ ଆଜି ଆମ କଙ୍କାଳସାର ଗୁଳର ଶେଷ କୁଟାଖିଅକ ଜାଳପୋଡ଼ି ଆମର ଜମିଦାର ପୁଅଙ୍କ ବାହାଘର ଭୋଜି, ରୋଷଣୀରେ ଲାଗୁ ।(ଏଇ ଭୋକିଲା ଆଖି ଆଗରେ ଟୁଲପାଉଁଶସବୁ କହୁଦେଉ, ଆମେମାନେ କଅଣ, ସେଇତକ—ସେଇତକ ଆମେ ଚାହୁଁ, ତା' ନହେଲେ—

ଜମିଦାର—(ତାର ମୁଣ୍ଡ ଉପରେ ପିସ୍ତଲ ଦେଖାଇ) Stop (ଷ୍ଟପ୍) (ଏତିକିବେଳେ ଜନତା ଠେଲି ଜମ୍ଭୀ ଆସି ମଝିରେ ଠିଆ

ହୋଇଗଲା । ଇଟିଦାର ଉଠନ୍ତୁ ହୋଇ ଟିସ୍ତେଲ ତଳକୁ ଭବଦେଲା ନେ ଲକ୍ଷ୍ମୀ ଲକ୍ଷ୍ମୀ ଆଗରେ ଅସି ଠିଆ ହେଲା ରମା, ଲକ୍ଷ୍ମୀକୁ ହାତଙ୍କର ପଛକୁ ଠେଲି) ।

---

## ଦ୍ୱିତୀୟ ଦୃଶ୍ୟ

ସେବାସଦନର ଅଗଣା—( ବିଜୟା ଓ ରମା )

ବିଜୟା—କାହିଁକି ? (ହସିଲା)

ରମା—( ଗମ୍ଭୀର ମୂର୍ତ୍ତିରେ ) ନାହିଁ ବଡ଼ଦେଈ, ସତେ ସେମିତି ମୋତେ ଡାକିବ ନାହିଁ ।

ବିଜୟା—ଆଉ କଅଣ ବୋଲି ତେବେ ଡାକିବ ?

ରମା—କାହିଁକି ? ରମା—ସମସ୍ତେ ଯାହା ବୋଲି ଡାକନ୍ତି ।

ବିଜୟା—ସମସ୍ତେ ଆଉ ମୁଁ, ଇଏ ମଝିରେ ଗୋଟେ ବଡ଼ ଫାଙ୍କ ଅଛି । ତା ଛଡ଼ା ସମସ୍ତଙ୍କର ଯେ ରମା, ସେ ମୋର ତ ଖାଲି ରମା ନୁହେଁ—

ରମା—ନାଁ, ସେ ଆପଣଙ୍କର ପ୍ରଜା ।

ବିଜୟା—ବେଶ୍, ଝମେଲା ହେଲା ଏବେ । ତେବେ ତ ମୋ ହୁକୁମ୍ ମାନିବ ତୁମେ । ଏଣିକି ମୁଁ ତୁମକୁ ଯେତେବେଳେ ଡାକିବି—ନୂଆବୋହୂ, ତୁମେ ବାହୁଡ଼ିବ—

ରମା—ନାଁ, ନାଁ ।

ବିଜୟା—ଦେଖୁଚ, ତା ହାହେଲେ ତୁମେ ରାଜଭକ୍ତ ନୁହଁ—ଅବାଧ୍ୟ ପ୍ରଜା ।

ରମା—ଅନ୍ୟାୟ ହୁକୁମ ହେଲେ ପ୍ରଜା ମାନିବ କେମିତି ?

ବିଜୟା—ମୁଁ ତ ଅନ୍ୟାୟ କିଛି କହୁନାହିଁ ।

ରମା—ଦେଖ, ବଡ଼ଲୋକ ଆଉ ଗରିବଙ୍କ ଭିତରେ ଗୋଳ, ଚଳନ-ସବୁ କଥାରେ ଗୋଟେ ଅମେଳ ।

ବିଜୟା—ମନରେ ବି ଅମେଳ ନାଁ କଅଣ ?

ରମା—ମନଟା ତ ଆଉ ଦେହରୁ ଅଲଗା ନୁହେଁ । ମୁଁ ଏଇ ରମା ହୋଇ ଥିବି—ତାହାର ଘର ଭାଙ୍ଗିବାକୁ, ସଂସାର ଜାଳିବାକୁ ମୋର ଇଚ୍ଛା ନହେଉ ।

ବିଜୟା—ବେଶ୍ ତ, କୋଉଠି ଘର ପୋଡୁଚ ଯେ—

ରମା—ମୁଁ; ମୁଁ, ଘର ପୋଡୁଚି ? [ନାଇଁ ତ । ପୋଡ଼ିଯିବ ବୋଲି ଅଛୁରି—

ବିଜୟା—ନିଜ ଘର ପୁଡ଼ିଚ—ଏଇତ ?

ରମା—(ନୀରବରେ ସୂତା କାଟିବାକୁ ଲାଗିଲା)

ବିଜୟା—ଗୋଟେ ନିପଟ ମଫସଲରେ ଜନ୍ମହୋଇ, ତମେ କେମିତି ଯେ ଏତେ ବଡ଼ ବଡ଼ କଥା ସବୁ ଭାବି ପାରିଲ, ମୁଁ ତ ବୁଝି-ପାରୁନାହିଁ ମୋଟେ । ଆମର ସ୍କୁଲ କଲେଜରେ ଏଣୁ କେତେ ଗଦା ଗଦା ବହି ଭିତରେ ଦେଖୁଛି—ଏଭଳି ମନୀଷ ହେବା ପାଇଁ ପାଠ ତ କିଛି ନାହିଁ । (ଅନନ୍ତ ହଠାତ୍ ଆସିଲେ । ରମା ଓଢ଼ଣା ଟାଣି ସଂଯତ ହୋଇଗଲା)

ଅନନ୍ତ—ହେଲନାହିଁ ବିଜୟା, ସମସ୍ତେ ଆମେ ପାଟିପଡ଼ି ଗଲୁ, କେହି ତାହାର କଥା ଶୁଣିଲେ ନାହିଁ ।

ବିଜୟା—କେମିତି ? ସବୁ ପଣ୍ଡ କରିଦେଲେ ?

ଅନନ୍ତ—ହଁ, ସେ ମାଗଣା ଲୁଣ ଦେଲେ, ଖମାରରୁ ଧାନ ବି କଟୁଛନ୍ତି ଯେ ଯେମିତ ଗୃହ୍ଣୁଁଲେ ଲଣ୍ଡା ପାଇଲେ, ଏମିତଙ୍କ ଏଇ ସେବା-ସଦନ ପାଇଁ ବି—

ବିଜୟା—ସେଇଅ ତ, ମୋ ଜାଣିବାରେ ତ ଗୋଟାଏ ଅପତ୍ତି ଛଡ଼ା ସବୁ ସେ ଜାଣିଛନ୍ତି, ଶୁଣିଛନ୍ତି।

ଅନନ୍ତ—ଆଉ ଅପତ୍ତି ? କାହାର ?

ବିଜୟା—ମୋର, ଅପଣଙ୍କର, ଭାଇଙ୍କର, ଆଉ ଆମ ସଙ୍ଗେ ସଙ୍ଗେ ଆଉ ଜଣକର ଯେ, ତାର ଅପେକ୍ଷା ମୁହଁ ଦିଶୁନାହିଁ, ମାନେ ଯୋଟେ—

ଅନନ୍ତ—ଅର୍ଥାତ୍—

ବିଜୟା—ବୁଝିପାରିଲେ ନାହିଁ ଅପଣ ? ଅମର ଏଇ ବଗୁଚା କୁଆ ବୋଲୁଛିର ମ—ମୋର ଭାଇଜ, ଭାଉଜ। ଅଃ, କି ମୋଟା ବୁଦ୍ଧି ଯେ ଅପଣଙ୍କର !

(ରମା ଉଠି ପଳାଇଗଲା)

ଅନନ୍ତ—ବିଜୟା ! ଛି, କଅଣ ଭାବିଥିବ ସେ କହ ନା ? ତୁମେ ବଡ଼—

ବିଜୟା—ସେଠେ ଭିତରେ କଥାଟା, ମୁହେଁ ମୁହେଁ କହେ। ନା ?

ଅନନ୍ତ—ଥାଉ, ଥାଉ, ତୁମେ ଅଗ ବାପାଙ୍କୁ ବୁଝାଇ ଗଣ୍ଡେ ଭାତ ଖୁଆଇବାର ଯୋଗାଡ଼ କର ଦେଖି।

ବିଜୟା—ଓ, ଏଇକଥା, ସେ କଅଣ ଖାଇବାକୁ ନାରାଜ ?

ଅନନ୍ତ—ଏବେକ ତାଙ୍କର ମୁଣ୍ଡ ଭଲନାହିଁ, ତା ଉପରେ ଏଠି ସେ ଜଳଗ୍ରହଣ କରିବେ ନାହିଁ ବୋଲି ଜିଦ ଧରି ବସିଛନ୍ତି। ସବୁ କଥା ତୁଟିଗଲା, ତଥାପି—

ବିଜୟା—ତଥାପି ତ ତୁଟିନାହିଁ।

ଅନନ୍ତ—ଜୟୀ ପଠେଇଲା ମୋତେ—

ବିଜୟା—ମୋ ପାଖକୁ ? ଆଜ ସେ ଗଲେ କୁଆଡ଼େ ?

ଅନନ୍ତ—ଥିଲା ତ ଖମାର ପାଖେ ।

ବିଜୟା—ଅଚ୍ଛା, ଚାଲନ୍ତୁ, ଚାଲନ୍ତୁ, ମୁଁ ସବୁକଥା ପଚେରି ଦଉଚି । ଆଜି କେହି ଯେତେବେଳେ ନ କହିଲେ—

ଅନନ୍ତ—ସବୁକଥା ମାନେ ?

ବିଜୟା—ତାଙ୍କ ଖାଇବା କଥା, ଅଜା ଭାଇଙ୍କ ବାହାଘର କଥା, ସବୁ—

ଅନନ୍ତ—ଅସମ୍ଭବ କଥା କହୁଚ ନାହିଁ । ଏ କଥାରେ ସେ ଘଞ୍ଚ ହେଲାପରି ଲାଗୁନାହିଁ ମୋତେ । ବଂଶ, ମାନ, ମହତ୍ତ୍ୱ—

ବିଜୟା—ଚୁଲିକି ଯାଉ । ଧନ, ବଂଶ, ମାନ—ଏସବୁ ନେଇ ଘରକରଣା ଚଳେ ନାହିଁ । ମଣିଷର ମଣିଷପଣିଆଁ ସିନା ଦେଖିବାର କଥା । ବାପା ରମାକୁ ଜାଣନ୍ତି ନାହିଁ, ତେବେ ଫେର୍ ମୁଁ ତ ବୁଝି ନଥିଲି । ଘୃଣା କରୁଥିଲି ଏଇ ଗରିବଗୁଡ଼ାଙ୍କୁ । ରମା ଆମ ଘରର ଯୋଗ୍ୟବୋହୂ, ଭାଇ ବହୁତ ଆଗରୁ ଦେଖି ପାରିଛନ୍ତି—ମଣିଷ ଭିତରେ ଦେବତା । ଚାଲନ୍ତୁ, ଚାଲନ୍ତୁ, ମୁଁ ଦେଖେଁ ।

( ଉଠି ବାହାରି ଚାଲିଗଲା )

( ବିଜୟା ଓ ଅନନ୍ତ ଚାଲିଯିବାର ଅଳ୍ପ ସମୟ ପରେ, ଗୋଟିଏ ବାଳିକା ଅସି କଣ୍ଠି ଧୀରେ ଧୀରେ ସେଠାକୁ ଆସି ଚାରିପାଖେ ଦେଖିଲା କେହି ଅଛନ୍ତି କି ନାହିଁ, ତା' ପରେ କହିଲା )

ବାଳିକା—କେହି କୁଆଡ଼େ ନାହିଁ । ଆମକୁ ଠକିଲୁ ରମା ଅପା, ଦେବ, ଧଡ଼ିଆ, ଗୋପ, ସଭ ହେବିଅଙ୍କୁ ଡାକିଆଣି ବୋହୂ ଚୋରି ଖେଳିବା ।

ଟିଲ୍ଲଏ—( ଅସି ) ଚାଇଁ, ରମା ଅପା ତାହାନ୍ତି ?
ସର—ମୁଁ ଡାକି ଆଣୁଛି । ( ଦୌଡ଼ି ଗୁଲିଗଲା ) ରମା ଅପା !
ରମା—( ଅସି ) କଅଣରେ ଟିଲଏ ?
ଟିଲଏ—( ରମାକୁ ବେଢ଼ି ) ଆମେ ସବୁ ଖେଳିବା ରମା ଅପା, ବୋହୂ ବୋହୂଙ୍କା ।
ରମା—ବାବାଙ୍କୁ କହୁଛ ? ସ୍ୱଗ ହେଉଛି ।
ସୁମତ୍ରେ—ହଁ, ବାବା କହୁଲେ ରମା ଅପାକୁ ନଅ ।
ରମା—ବୋହୂ କିଏ ହେବ ?
ସର—ରହ, ଗଣେ, ସୁମତ୍ରେ ଠିଆ ହୁଅ । (ରମା ଅଡ଼େଇ ହୋଇଗଲା) ନହୁଁ, ସେ କଥା ହବ ନାହିଁ । ତମେ ଅସୁଜ ରମା ଅପା !
ରମା—ଛି, ମୁଁ କଅଣ ଖେଳିବ ?
ସୁମତ୍ରେ—ନାଇଁ ନାଇଁ । ( ଟାଣିକରି ରମାକୁ ଠିଆ କଲେ ମଝିରେ )
ସର—ହୁଁ, ଏଥର ହେଲା । ( ଅଙ୍ଗୁଠି ଦେଖାଇ ଗଣିଲା )

ଇଟିକିଲି ମିଟିକିଲି ଫୁଟିଗଲା କାଇଁଚ,
ଭମର ଅମର ନାଲି ପଇଁଚ
ନାଲି ଝେହ ଝେହ ବାଜଇ ହାୱ,
ଗୋଟିକ ଉପରେ ଗୋଟିଏ ଚାୱ ।

( ରମା ଉପରେ ଅଙ୍ଗୁଠି ପଡ଼ିଲା, ସୁମତ୍ରେ ତାଲିମାରି ହସି ଉଠିଲେ )
ସର—( ରମାକୁ ଟାଣି ) ଅସ ଅପା, ତମ ଆଖି ମୁଦେଁ, ଦେଖି ତୁମ କାନ ।
ରମା—କାଇଁମ, ତୁ ଠିକ୍ କର ଗଣ ନଇଁ କି କଅଣ ?

ସବ—ଅହ୍ କଅଣ, ଉଠେମ ତ ବୋହୂ, ହେଇଚ—ନାଇଁ କେଉଁମତେ

ସମସ୍ତେ—ହିଁ, ହିଁ, ବୋହୂ ରମା ଅପା !

ସର—( ଟାଣି ବସାଇଲା ରମାକୁ, ଅଖିରେ ବାନ୍ଧି ଭଙ୍ଗିଲା )

ଜଣେ—ଧଣିବଠି ଲେ ସର, ଉଲ୍ଟକୁ ଭଙ୍ଗି ଦେଇଥା !

ସର—ତୁମେ ସବୁ ଯା, ନୂଚ, ମୁଁ ଉଲ୍ଟକୁ ନୂଆ ଦଜରମ ।

( ପିଲାମାନେ ଗ୍ଳାଲିଗଲେ ଧୀରେ ଧୀରେ । ସର ହାତ ଛାଡ଼ିଦେଇ ହସି ହସି ଲୁଚିଗଲା । ରମା ଅଣ୍ଡାଳି ହେଉଥିଲା ବେଳେ ଅସି ପହଞ୍ଚିଛି ଜୟୀ । ସେଇ ହୋଇଗଲା ଝାଙ୍କ ଗ୍ଳାଲି ରମାକୁ ଦେଖି, ହସି ହସି ପାଦ ଚପି ଚପି ଅଗେଇଲେ ସେ । ରମା, ଅଣ୍ଡାଳିହେଇ ଧରପକାଇ ହାତ ଛୁଇଁଲା, 'ଟ୍ରେର' ଭାଙ୍ଗୁ ଚମକି, ଜୟୀ ରମାର ହାତ ଧର ବହୁଲା )

ଜୟୀ—ରମା !

ରମା—( ଅଖି ପିଟାଇବାର ଓ ଜୟୀ ହାତରୁ ଛାଡ଼ିଯିବାର ଚେଷ୍ଟା କଲା ) ମୁଁ ଜାଣି ନାହିଁ—ଖେଳୁ ଖେଳୁ—

ଜୟୀ—ଧସ୍ତ ପଡ଼ିଗଲ, ନାଁ ?

ରମା—( ହାତ ଛଡ଼ାଇ ) ସାନବାବୁ, ଗଡ଼ିବ ଲେଉ ମୁଁ, ଅପଣଙ୍କ ସାଙ୍ଗେ ଟମାଟେ ଏପରି ଦେଖିଲେ—

(କଥା ହୋଇ ଅସୁଥିଲେ ଜମିଦାର ଓ ବିଜୟୀ)

ଜମିଦାର—ଦୋଷ କଣ ସେଥିରେ ?

ରମା—(ସନ୍ତ୍ରହୋଇ) ଛାଡ଼, ବଡ଼ବାବୁ ଅସୁଛନ୍ତି ଜ କଅଣ ।

ଜୟୀ—ବାବା ? (ଦୁହେଁ କବାଟ ପିଟାଇ ଗ୍ଳାଲିଗଲେ)

(ବିଜୟୀ ଓ ଜମିଦାର ପ୍ରବେଶ କଲେ)

ଛଜଯ୍ୟା—ରକ୍ତ ମାଂସ ତ ଅଛ ଗଢବଲେଢର ଅଲଗା ନୁହେଁ,
ବାବା ! ଅମେ ଘର ଢଢ଼ିବା ମନୁଷକୁ ନେଇ ପିନା, ଧନକୁ
ନେଇ ତ ନୁହେଁ ।

ଜମିଦାର—ସମସ୍ତେ ମୋତେ କାହିଁକି ଯେ ଭୁଲ ବୁଝୁଛ, ମୁଁ ଜାଣି
ପାରୁନାହିଁ ତ ।

ଛଜଯ୍ୟା—ଭୁଲ୍ ବୁଝୁଛନ୍ତି, କିଏ ?

ଜମିଦାର—ଏଇ, ତୁମେମାନେ ସମସ୍ତେ—

ଛଜଯ୍ୟା—ବାଃ, ଅପଣ ତ ସବୁଦେଲେ ପ୍ରଜାଙ୍କୁ । ଗୋଲମାଲ୍
ତୁଟିଯିବା ପରେ ବ ଅପଣ ଖାଉ ନାହାନ୍ତି, ପିଉ ନାହାନ୍ତି—
ଗୋଟାଏ ଜିଦ୍ ଧର ବସିଛନ୍ତି ।

ଜମିଦାର—ଏଇ ତ, ବୁଝିଲି ସବୁ ଭୁଲ୍ । ପ୍ରଜାଙ୍କର ଦୁଃଖ ଦାବୀ,
ଜଣ୍ଡିବାକୁ ତାଙ୍କୁ ସତ୍ୟାଗ୍ରହ ଅସେ, ମେଳ ବାନ୍ଧିଅସେ । ମୁଁ
ଜମିଦାର, ରାଜା, ମତେ ତାଙ୍କ କଥା ଶୁଣିବାକୁ ହେବ,
ଅଉ ମୋ କଥା ? ସେତେବେଳକୁ—

ଛଜଯ୍ୟା—ଅପଣଙ୍କର ଖୋଉକଥା କିଏ ନ ଶୁଣିଛି ? ଅପଣ ଅଗେ
ଖାଇ ସାରନ୍ତୁ ।

ଜମିଦାର—ଫେର୍ ତ ଭୁଲ୍ କରୁଚୁ । ଖାଲି ସମସ୍ତେ କହୁଲ ଖାଅ;
ଖାଅ । ଅରେ ଖାଇବ କଅଣ ? କିଏ ଦବ ?

ଛଜଯ୍ୟା—କିଏ ଦବ ? ଅପଣଙ୍କୁ ?

ଜମିଦାର—ହଁ, ହଁ, ମୋର ଅଛି କଅଣ ? ବୁଝି ନ ଥିଲି ଅଗେ,
ଏବେ ବୁଝିଲିଣି । ଏ ସବୁର ଅଧିକାରୀ ମୋର ହଜାର
ହଜାର ପ୍ରଜା, ସନ୍ତାନ—କେହି ମୋତେ ଦେଇଚ ? କେହି
ମୋତେ ଡାକୁଚ ? ଏମିତକ ସାନବାବୁ ?—(ହଠାତ୍ ଉଠନ୍ତି

କବାଟ ଫିଟାଇ ବାହାର ଆସି ଜମ୍ଭୀ ଜମିଦାରଙ୍କ
ଗୋଡ଼ ଧରିଲେ)

ଜମ୍ଭୀ—ମୋର ଦୋଷ କ୍ଷମା କରନ୍ତୁ, ବାପା!

ଜମିଦାର—(ଉଠାଇ) ଦୋଷ? ଦୋଷ ଏଟା ତ ତୋର ନୁହଁ।
ଆଜ ଜାଣେ ଅଛୁ, ଯାହାର ଦୋଷ, ତୋଠୁ ବଳି।
କ୍ଷମା ବା ଦଣ୍ଡ ପାଇବାକୁ ହେଲେ—

ଜମ୍ଭୀ—ହଁ ବାପା, ତୁମେ ପାଇବା ଉଚିତ। (କହୁଁ କହୁଁ [illegible]
ଯାଇ ରମାକୁ ଟାଣିଆଣି) ଛୁ, ସେଇଠାକୁ ପରି [illegible]
(ରମା ଜମିଦାର [illegible])

ଜମିଦାର—(ରମାକୁ ଉଠାଇ) ଜମ୍ଭୀ ଓ ରମାକୁ [illegible]
ତମେ ଉଭୟ ଦୋଷୀ—

ଜମ୍ଭୀ—[illegible] ଘରକୁ [illegible]

ଜମିଦାର—[illegible] କ୍ଷମା ଦେବ ତୁମକୁ, ଏଠି ନୁହେଁ—ଘରକୁ ଚାଲ।
(ସ୍ୱାମୀଜୀ ଆସିଛନ୍ତି, ହାତରେ ପ୍ରସାଦ—ପଛରେ ଅନନ୍ତ)

ଜମିଦାର—ଓଃ ସ୍ୱାମୀଜୀ, ଆଜି ଏ ଅନନ୍ତ? ମୁଁ ଭଲ ଦେଖିଲେ—

ସ୍ୱାମୀଜୀ—ଭଲ ଆଜି କଅଣ ବାବା? ଅଦିନ ଭଜନମାନ ଠାରେ
ବସି ଜାହାନ୍ତି, ଏଣେ ଗାଆଁ ସାରା ପ୍ରଜାମାନେ ବ—

ଜମିଦାର—ଓଃ ସେମାନେ ଖାଇ ଜାହାନ୍ତି, ଏତେବେଳଯାଏ?

ସ୍ୱାମୀଜୀ—ଏଇଠି ସେବା-ସଦନରେ ପ୍ରଜାମାନେ ସମସ୍ତେ ଆପଣଙ୍କୁ
[illegible] କର ଗୁହାଁ ବସିଛନ୍ତି।

[illegible]ଦାର—ଓଃ, ତେବେ ଆଜି ତେର ଭାଗ୍ୟ କ? [illegible]
ସରଯାଇଛି। [illegible] ଠା ଭଲା, ଚାଲ, ସ୍ୱାମୀଙ୍କ, [illegible]